# ଟମ୍ ସୟାର୍‌ର ଦୁଃସାହସିକ କାହାଣୀ

[ମାର୍କ ଟ୍ୱେନ୍‌ଙ୍କ ଦ୍ୱାରା ଲିଖିତ The Adventures of Tom Sawyer ବହିର ଓଡ଼ିଆ ରୂପାନ୍ତର]

ଚନ୍ଦ୍ରାମଣି ମହାପାତ୍ର

ବିଦ୍ୟାପୁରୀ

ପ୍ରଥମ ପ୍ରକାଶ ୧୯୮୮

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
ଗୋସ୍ୱାମୀ ପ୍ରେସ୍
ଆଲମଚାନ୍ଦ ବଜାର, କଟକ ୭୫୩୦୦୨

ମୂଲ୍ୟ—ଟ ୮-୦୦

# ଉପକ୍ରମଣିକା



ଊନବିଂଶ ଶତାବ୍ଦୀର ଲୋକପ୍ରିୟ ଆମେରିକୀୟ ଲେଖକମାନଙ୍କ ମଧ୍ୟରେ ମାର୍କ ଟ୍ୱେନ୍ ଅନ୍ୟତମ । ଏକ ଦରିଦ୍ର ପରିବାରରେ ସେ ଜନ୍ମଲାଭ କରିଥିଲେ । ମାତ୍ର ତେରବର୍ଷ ବୟସରେ ମାର୍କ ଟ୍ୱେନ୍‌ଙ୍କୁ ପୋଥିରେ ଡୋରି ବାନ୍ଧିବାକୁ ପଡ଼ିଲା । ସ୍କୁଲରୁ ବିଦାୟ ନେବା-ପରେ ସେ ଭାଇଙ୍କ ପାଇଁ ଜଣେ ମୁଦ୍ରାକର ରୂପେ କାମ କଲେ । ସେହି ସମୟରେ ହାତରେ କାମ ନ ଥିବା ବେଳେ ସେ ସ୍ଥାନୀୟ ସମ୍ବାଦପତ୍ର ପାଇଁ ଗଳ୍ପ ରଚନା କରୁଥିଲେ । କୋଡ଼ିଏ ବର୍ଷ ବୟସରେ ସେ ମିସିସିପି ନଦୀରେ ଯାତାୟାତ କରୁଥିବା କୌଣସି ଏକ ନୌକାରେ କାର୍ଯ୍ୟାରମ୍ଭ କଲେ । ତାଙ୍କ ପୁସ୍ତକ ଲିଖିତ ପାତ୍ର-ପାତ୍ରୀମାନଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା ଏହିଠାରେ । ମିସିସିପି ନଦୀର ଜଳମାର୍ଗକୁ କେନ୍ଦ୍ର କରି ତାଙ୍କର ଅଧିକାଂଶ ଗଳ୍ପ ରଚିତ ।

ତାଙ୍କ ରଚିତ ପୁସ୍ତକାବଳୀ ମଧ୍ୟରେ 'ଟମ୍ ସୟାର୍‌ର ଦୁଃସାହସିକତା' ପୁସ୍ତକଟି ସର୍ବୋତ୍କୃଷ୍ଟ । ଦୟାଶୀଳା ପୋଲି ମାଉସୀଙ୍କ ପାଖରେ ରହି ମାତୃହୀନ ଟମ୍ ସୟାର୍‌ର ବାଲ୍ୟଜୀବନ କିପରି ଭାବରେ ଅତିବାହିତ ହୋଇଥିଲା ଏଥିରେ ସେହିକଥା ବର୍ଣ୍ଣିତ ହୋଇଅଛି । ଏହା ପାଠକମାନଙ୍କୁ ନିଶ୍ଚିତଭାବେ ଆନନ୍ଦ ଦେବ ।

# ଏଇ ପିଲାଟିର ନାମ ଟମ୍ ସୟାର୍

"ଟମ୍ !"

କିଛି ଉତ୍ତର ନାହିଁ ।

"ଟମ୍ !"

କିଛି ଉତ୍ତର ନାହିଁ ।

"ଟୋକାଟା ଆଉ କେଉଁଆଡ଼େ ଗଲା ?" ପୋଲି ମାଉସୀ ମନେ ମନେ ଭାବିବାରେ ଲାଗିଥାନ୍ତି । "ସେ ନିଶ୍ଚୟ ଏଇଠାରେ କେଉଁଠି ଥିବ ।"

ଦରଜା ପାଖକୁ ଗଲେ । ବାହାରେ ଥିବା ଫୁଲ ବଗିଚାକୁ ଚାହିଁଲେ । ବଡ଼ପାଟିରେ ପୁଣି ଡାକଲେ, "ଟମ୍ ! ଟମ୍ !" ତଥାପି କୌଣସି ଉତ୍ତର ମିଳିଲା ନାହିଁ ।

ବୃଦ୍ଧା ଚିନ୍ତାବସ୍ଥାରେ ଛିଡ଼ା ହୋଇଥାନ୍ତି । ହଠାତ୍ ପଛପଟୁ କ'ଣ ଗୋଟିଏ ଶବ୍ଦ ତାଙ୍କ କାନରେ ବାଜିଲା । ସେ ତତ୍‌କ୍ଷଣାତ୍ ଆଖି ଫେରାଇ ପଛକୁ ଚାହିଁଲେ । ଆଲମାରି ପାଖ ଦରଜା ନିକଟରେ ଟମ୍ ଛିଡ଼ା ହୋଇଥାଏ ନିର୍ବାକ୍‌ଭାବରେ । ମୁହଁ ଚାରିପଟେ ଇତସ୍ତତଃ ଫଳର ମୋରବା ଲାଗିଥାଏ !

ରାଗରେ ପୋଲି ମାଉସୀଙ୍କର ସର୍ବାଙ୍ଗ ଜଳି ଉଠିଲା । ଚିତ୍କାର କରି ପଚାରିଲେ, "କ'ଣ କରୁଥିଲୁ ?" ଟମ୍ ନିରୁତ୍ତର ରହିଲା । ପୋଲି ମାଉସୀ କହିଲେ, "ତୁ ପୁଣି ସେଇ ମୋରବା ଚୋରି କରି

ଖାଇଲୁ । ତୋତେ ସେହି ଆଲମାରୀଠାରୁ ଦୂରରେ ରହିବା ପାଇଁ ବାରମ୍ବାର କହିଛି କି ନାହିଁ ? ମୋ ବାଡ଼ି କୁଆଡ଼େ ରହିଲା ?" ପୋଲି ମାଉସୀ ବାଡ଼ିଟି ଉପରକୁ ଟେକିଲେ । ଟମ୍‌କୁ ଖୁବ୍ ଜୋରରେ ପିଟିବା ପାଇଁ ସେ ପ୍ରସ୍ତୁତ ହେଉଛନ୍ତି ଏହିପରି ସମୟରେ ଟମ୍ ପାଟି କରି କହିଲା, "ମାଉସୀ, ମାଉସୀ ପଛକୁ ଚାହିଁଲ ।"

ପୋଲି ମାଉସୀ ପଛକୁ ଦୃଷ୍ଟି ଫେରାଇଲେ । ଟମ୍‌କୁ ସୁବର୍ଣ୍ଣ ସୁଯୋଗ ମିଳିଗଲା । ଆଖିପିଛୁଳାକେ ସେ ଘର ଭିତରୁ ଧାଇଁ ପଳାଇଲା । ଦେଖୁ ଦେଖୁ ବାଡ଼ି ଡେଇଁ ପଳାଇଲା ବହୁତ ଦୂରକୁ !

ମନକୁ ରାଗ ଆସିଲେ ବି ପୋଲି ମାଉସୀ ନ ହସି ରହି ପାରିଲେ ନାହିଁ । ମନେ ମନେ ଭାବିଲେ, "ପିଲାଟା ବାସ୍ତବିକ୍ ଖୁବ୍ ଦୁଷ୍ଟ ହୋଇଯାଉଛି । ତଥାପି କାହିଁକି କେଜାଣି ପିଲାଟି ପାଇଁ ମୋ ଅନ୍ତରରେ ସ୍ନେହ ପୂରି ରହିଛି । ବିଚରା ମାତୃହୀନ ପିଲାଟିର ମୁହଁକୁ ଚାହିଁଲେ ହୃଦୟ ବାହୁନି ଉଠେ । ଭଉଣୀର ମୃତ୍ୟୁ ପରେ ତାହାର ପିଲାଟିକୁ ମୁଁ ଦେଖିବିନି ତ ଦେଖିବ କିଏ । ମୁଁ ବଞ୍ଚି ଥାଉଁ ଥାଉଁ ସେ କଣ ନିରାଶ୍ରୟଭାବେ ବୁଲିବ ? ମୋତେ ନିଶ୍ଚୟ ତାହାର ଯତ୍ନ ନେବାକୁ ପଡ଼ିବ । ତାହାକୁ ଆଘାତ କରିବାକୁ ମୁଁ କେବେହେଲେ ଇଚ୍ଛା କରେନି ! ତଥାପି ତାହା ପାଇଁ କିଛି ନା କିଛି ଶାରୀରିକ ଦଣ୍ଡର ବ୍ୟବସ୍ଥା କରିବାକୁ ପଡ଼ିବ । ତାହା ନ ହେଲେ ସେ କ୍ରମଶଃ ଦୁଷ୍ଟ ଏବଂ ଅଳସୁଆ ହୋଇଯିବ । ହଁ, ମୋତେ ନିଶ୍ଚିତଭାବରେ ଟାଣୁଆ ହେବାକୁ ପଡ଼ିବ !" ପୋଲି ମାଉସୀ ଦୀର୍ଘଶ୍ୱାସ ଛାଡ଼ିଲେ । "ମୋରବା ଚୋରି ପାଇଁ ତାକୁ ଶାସ୍ତି ଦେବାକୁ ହେବ । କିନ୍ତୁ ଶାସ୍ତି ଦେବ କିପରି ? ହଁ ମନେ ପଡ଼ିଲା । କାଲି ଶନିବାର । ଶନିବାର ଦିନ ସ୍କୁଲ ବନ୍ଦ ଥାଏ । ସେହି ଦିନଟା ପିଲାମାନଙ୍କର ଛୁଟିଦିନ । ମୁଁ କିନ୍ତୁ ଟମ୍‌କୁ କେଉଁଆଡ଼େ ବୁଲିବାକୁ ଛାଡ଼ିବ ନାହିଁ ।

ଶନିବାର ଦିନ ତା ହାତରେ କାମ କରାଇବ । ତାହା କଲେ ସେ ଶାସ୍ତି ପାଇବା ଭଳି ମନେ କରିବ ।”

ସେଦିନ ଉପରଓଳି ଟମ୍ ସ୍କୁଲରୁ ପଳାଇଲା । ତାକୁ ଖୁବ୍ ବଢ଼ିଆ ଲାଗୁଥାଏ । ଗୃହପାଖର ମନୋରମ ଦୃଶ୍ୟ ତାକୁ ପାଗଳା କରି ପକାଉଥାଏ । ତାହାର ଜଣେ ବଡ଼ ସାଙ୍ଗର ନାମ ଥାଏ ହ୍ୟୁ-ହାଉଟାର୍ । ଦିହେଁଯାକ ସାଙ୍ଗ ହୋଇ ବଣକୁ ଗଲେ । ବଣ ଭିତରେ ଖେଳ-କୌତୁକ କରି ଆନନ୍ଦରେ ସମସ୍ତ କଟାଇଲେ । ସେଦିନ ସନ୍ଧ୍ୟାବେଳେ ଘରକୁ ଫେରୁ ଫେରୁ ଟମ୍‌ର ବିଳମ୍ବ ହୋଇଗଲା । ଭିତରକୁ ଯାଇ ଦେଖିଲା ଯେ ତାହାର ମାଉସୀ ଏବଂ ଭାଇ ସିଦ୍ ଖାଇବାକୁ ବସିଛନ୍ତି । ତାହାର ମାଉସୀଙ୍କୁ ଜଣାଗଲା, ଟମ୍ ଯେପରି ସେଦିନ ସ୍କୁଲକୁ ଯାଇ ନାହିଁ । ମନର ସନ୍ଦେହ ଲୁଚାଇ ରଖି ସେ ତାହାକୁ କେତେଗୁଡ଼ିଏ ପ୍ରଶ୍ନ ପଚାରିଲେ ।

“ଆଜି ସ୍କୁଲରେ ଖୁବ୍ ଗରମ ହେଉଥିବ । କ'ଣ କହୁଛୁ ଟମ୍ ?”

“ହଁ, ମାଉସୀ ! ତୁମେ ଯାହା କହୁଛ ସତ କଥା । ସ୍କୁଲରେ ଆଜି ଖୁବ୍ ଗରମ ।”

“ତୋତେ ନିଶ୍ଚୟ ପହଁରିବା ପାଇଁ ବଡ଼ ଇଚ୍ଛା ହୋଇଥିବ ମୁଁ କଣ ମିଛ କହୁଛି ?”

“ମାଉସୀ, ପହଁରିବା ପାଇଁ ମୋର ଆଦୌ ଇଚ୍ଛା ହେଉ ନ ଥିଲା ।”

“ଠିକ୍ ଅଛି । ମୋ ପାଖକୁ ଆସିଲୁ । ତୋ କଲର୍‌ଟା ଦେଖେ ।”

ପୋଲି ମାଉସୀଙ୍କର ଏପରି କହିବାର କାରଣ ଥିଲା । ସେ ଟମ୍‌ର କଲର୍‌ଟିକୁ ସାର୍ଟ ସହିତ ସିଲାଇ କରି ଦେଉଥିଲେ । ତାହାହେଲେ ସେ ସାର୍ଟଟି କାଢ଼ି ନେଇ ପାରିବ ନାହିଁ ଏବଂ

ପଢ଼ିବାକୁ ଯାଇ ପାରିବ ନାହିଁ । ପୋଲି ମାଉସୀ ଟମ୍‌ର କଲରଟିକୁ ଭଲ ଭାବରେ ପରୀକ୍ଷା କରି ଦେଖିଲେ । ସେ ପର୍ଯ୍ୟନ୍ତ ସାର୍ଟରୁ କଲର୍‌ର ସିଲାଇ ଫିଟି ଯାଇ ନ ଥାଏ ।

ଖୁସି ହୋଇ ମାଉସୀ କହିଲେ, "ବର୍ତ୍ତମାନ ଠିକ୍ ରୂପେ ଜାଣିଲି ଯେ ତୁ ପଢ଼ିବାକୁ ଯାଇ ନାହୁଁ । ଟମ୍, ତୁ ବେଶ୍ ଭଲ ପିଲା ।"

ସିଡ୍ କହିଲା, "ପୋଲି ମାଉସୀ, ମୁଁ ଦେଖିଛି, ତୁମେ ଧଳା-ସୂତାରେ କଲର୍ ସିଲାଇ କରିଥିଲ । ବର୍ତ୍ତମାନ ସେହି ସିଲାଇକୁ ଦେଖ । ସେଠାରେ ଆଉ ଧଳାସୂତା ଅଛି କି ? ତା ବଦଳରେ ସେଠାରେ ଲାଗିଛି କଳା ସୂତା ।"

ଟେବୁଲ ଉପରୁ ଡିଆଁ ମାରି ଟମ୍ ଦୌଡ଼ିଲା ବାହାରକୁ । ରାଗରେ ତାହାର ସର୍ବାଙ୍ଗ ନାଲି ହୋଇଗଲା ଘଡ଼ିକ ଭିତରେ । ଚିତ୍କାର କରି ତାହାର ଭାଇକୁ କହିଲା, "ଜାଣିରଖ, ଏଥିପାଇଁ ତୋ ସହିତ ମୋର ଲଢ଼େଇ ହେବ ।"

ହଠାତ୍ ଆଗରେ ଗୋଟିଏ ପିଲାକୁ ଛିଡ଼ା ହୋଇଥିବାର ଦେଖିଲା । ତା ପୂର୍ବରୁ ସେ କେବେହେଲେ ସେହି ପିଲାକୁ ଗାଁରେ ଦେଖି ନ ଥିଲା । ବଢ଼ିଆ ପୋଷାକ ପିନ୍ଧି ଥାଏ । ପାଦରେ ହଳେ ସୁନ୍ଦର ଯୋତା ମାଡ଼ିଥାଏ । ରବିବାର ବ୍ୟତୀତ ଅନ୍ୟଦିନମାନଙ୍କରେ ଟମ୍ ଯୋତା ମାଡ଼େ ନାହିଁ । ପିଲାଟିକୁ ଦେଖି ତାକୁ ଭଲ ଲାଗିଲା ନାହିଁ ।

କହିଲା, "ମୁଁ ତତେ ଧକା ମାରି ତଳେ ପକାଇଦେଇ ପାରିବି ।"

"ଚେଷ୍ଟା କର !"

"ଇଚ୍ଛାକଲେ ଘଡ଼ିକ ଭିତରେ ତୋତେ ତଳେ କଚାଡ଼ି ଦେଇ ପାରିବି ।"

"ତାହା ତୁ କେବେହେଲେ କରିପାରିବୁ ନାହିଁ ।"

"ମୁଁ ଜୋର୍ ଦେଇ କହୁଛି ଯେ ମୁଁ ପାରିବ ।"

କିଛି ସମୟ ଗଲା । ଦୁହେଁଯାକ ଜୋରରେ ନିଃଶ୍ୱାସ ମାରୁଥାନ୍ତି । ମାରିବଡା ଭଙ୍ଗି ଟମ୍ ପଚାରିଲା, "ତୋର ନାମ କ'ଣ ?"

"କାହିଁକି ? ମୁଁ କହିବି ନାହିଁ ।"

"ତୋତେ କଚୁଡ଼ ତଳେ ପକାଇବାକୁ ମୋତେ ଦୁଇଟିଯାକ ହାତ ଲଗାଇବାକୁ ପଡ଼ିବ ନାହିଁ ।"

"ଥରେ ଚେଷ୍ଟା କରି ଦେଖ । 'ପାରିବ, ପାରିବ' ବୋଲି ମୁହଁରେ ତ ବହୁତଥର କହିଲୁଣି । ଖାଲି ମୁହଁରେ କହିଦେଲେ କାମ ହୋଇଯାଏ ନାହିଁ । ମୁଁ ଜାଣେ ତୁ ପାରିବୁ ନି । ତୁ ବଡ଼ ଡରକୁଳା ।"

"କିଏ ଡରକୁଳା ?"

"ତୁ ।"

"ମୁଁ କେବେହେଲେ କାହାକୁ ଡରେ ନାହିଁ ।"

"ତୁ ଯେତେ କହିଲେ ବି ମୁଁ କେବେହେଲେ ମାନିବି ।"

ରାଗରେ ଡମା ଡମା ଆଖି କାଢ଼ି ଉଭୟେ ଉଭୟଙ୍କୁ ଚାହିଁଲେ । ଆସ୍ତେ ଆସ୍ତେ ଜଣେ ଅନ୍ୟ ଜଣକର ନିକଟବର୍ତ୍ତୀ ହେବାକୁ ଲାଗିଲା । ଚୁହୁଁ ଚୁହୁଁ କାନ୍ଧ କାନ୍ଧର ସଂଘର୍ଷ ହେଲା । କିଛି ସମୟ ଧରି ସେମାନେ ଠେଲାଠେଲିରେ ଲାଗିଗଲେ । ତା'ପରେ ମୁହୂର୍ତ୍ତକ ପାଇଁ ସେମାନେ ଧୀରସ୍ଥିର ଭାବରେ ଛିଡ଼ା ହୋଇ ରହିଲେ । ନିଜର ଗୋଡ଼ ଆଙ୍ଗୁଠିରେ ଧୂଳିରେ ଗୋଟିଏ ଲମ୍ବା ଗାର ଟାଣି ଟମ୍ କହିଲା, "ଏଇ ଗାର ଡେଇଁ ଯେବେ ମୋ ଆଡ଼କୁ ଆସୁ ତାହା-ହେଲେ ତୋ ସହିତ ମୋର ଲଢ଼େଇ ସୁନିଶ୍ଚିତ ବୋଲି ଜାଣିରଖ ।" ତା କଥାକୁ ଡରିଲେହେଲେ ଖାତିର୍ ନ କରି ପିଲାଟି ଗାର ଡେଇଁ

ଆଗେଇଗଲା ଟମ୍ ଆଡ଼କୁ । ପରମୁହୂର୍ତ୍ତରେ ଉଭୟଙ୍କ ମଧ୍ୟରେ ଲଢ଼େଇ ଆରମ୍ଭ ହୋଇଗଲା । ବିଧା, ଚୋଇଟା ଓ ବର୍ଷା ଧାର ଏକ ଲୋମହର୍ଷଣ କାଣ୍ଡ ଚାଲିଲା କିଛି ସମୟ ଧରି । ଦୁହେଁଯାକ ଭୂଇଁରେ ଗଡ଼ାଗଡ଼ି ହେବାରେ ଲାଗିଲେ । ଉଭୟଙ୍କର ପିନ୍ଧିବା ଲୁଗା



ଚିରିଗଲା । ଧୂଳିରେ ଅସନା ହୋଇଗଲା । ଝର ଝର ହୋଇ ଉଭୟଙ୍କର ନାକରୁ ଝରିଲା ଲହୁ । ଟମ୍‌ର ଜୋର୍ ବେଶୀ ହେଲା । ଶେଷରେ ଅନ୍ୟ ପିଲାଟି ଉପରେ ମାଡ଼ିବସି ଚିତ୍କାରିଲା, "ଯାହା ମୁହଁରେ କହିଥିଲୁ ସେକଥା କାମରେ କଲୁ କି ନାହିଁ ?"

ପିଲାଟି କିଛି କହିଲା ନାହିଁ । ଛିଡ଼ା ହେବା ପାଇଁ ଖୁବ୍ ଚେଷ୍ଟା କରୁଥାଏ । ଟମ୍ ତାକୁ ପୁଣି ଧକାଏ ମାରିଲା । ଚିତ୍କାର କରି ପିଲାଟି କହିଲା, "ଯଥେଷ୍ଟ ହୋଇଗଲା । ଏଥର ମୋତେ ଛାଡ଼ିଦେ ।" ଟମ୍ ଆଉ ବାଧା ଦେଲା ନାହିଁ । ପିଲାଟି ଉଠି ଛିଡ଼ା ହେଲା ଏବଂ ଧୀରେ ଧୀରେ ପାଦ ପକାଇ ସେଠାରୁ ଚାଲିଗଲା । ଗୋଟିଏ ହାତରେ ରୁମାଲଟିଏ ଧରି ନାକ ଉପରେ ଚାପି ରଖିଥାଏ । ଅନ୍ୟ ହାତ ଲଗାଇ ଲୁଗା ଉପରୁ ଧୂଳି ଝାଡ଼ି ଦେଉଥାଏ । ଟମ୍ ଛିଡ଼ାହୋଇ

ସବୁ ଦେଖୁଥାଏ; ଆଉ କରି କରି ହୋଇ ହସିବାରେ ଲାଗିଥାଏ । ପରଜନ୍ମ ସାଙ୍ଗକୁ ଟମ୍‌ର ଅଟ୍ଟହାସ୍ୟ ଅନ୍ୟ ପିଲାଟିକୁ ବଡ଼ ବାଧିଲା । ତକ୍ଷଣ ଢେଲାଟାଏ ଉଠାଇ ଖୁବ୍ ଜୋରରେ ଫିଙ୍ଗିଲା ଟମ୍ ଆଡ଼କୁ । ଟମ୍ ଛାଡ଼ିବାର ପିଲା ନୁହେଁ । ତାକୁ ଧରିବା ଲାଗି ଆଖିବୁଜି ଦୌଡ଼ିଲା । କିନ୍ତୁ ଧରି ପାରିଲା ନାହିଁ । ପିଲାଟି ତାହାର ଘର ଭିତରକୁ ପଳାଇଗଲା ।

ଟମ୍ ସେଇ ଘରର ବାହାରପଟେ ଅପେକ୍ଷା କରି ରହିଥାଏ । କିଛି ସମୟ ପରେ ପିଲାଟିର ମାଆ ଘର ଭିତରୁ ବାହାରି ଟମ୍‌କୁ ଖୁବ୍ ବିରକ୍ତ ହେଲେ ଏବଂ ସେଠାରୁ ଚାଲିଯିବା ପାଇଁ କହିଲେ ।

ଟମ୍ ଧୀରେ ଧୀରେ ଘରକୁ ଫେରିଲା । ତାହାର ପୋଷାକ ପରିଚ୍ଛଦର ଅବସ୍ଥା ଦେଖି ପୋଲି ମାଉସୀ ରାଗରେ ଜଳିଗଲେ । କହିଲେ, "ବାରମ୍ବାର ମନାକଲେ ବି ପୁଣି ଲଢ଼େଇରେ ମାତିଲୁଣି । ଏଥର ଦଣ୍ଡ ନ ଦେଇ ତୋତେ ଛାଡ଼ିବି ନାହିଁ । କାଲି ତୋତେ କଠିନ ପରିଶ୍ରମ କରିବାକୁ ପଡ଼ିବ । କାଲି ତୋତେ ପହଁରିବାକୁ ଛାଡ଼ିବି ନାହିଁ । ଖେଳିବା ପାଇଁ ମଧ୍ୟ ତୋତେ ସୁବିଧା ଦିଆଯିବ ନାହିଁ ।"

## ଟମ୍ କପର ପଟା ବାଡ଼ରେ ଚୂନ ଦେଲା

ପରଦିନ ଥାଏ ଶନିବାର । ସେଦିନ ସ୍କୁଲ୍ ନ ଥାଏ । ଲଗାମ-ଛଡ଼ା ହୋଇ ଗାଁର ପିଲାମାନେ ମନ ଆନନ୍ଦରେ ଘୂରି ବୁଲୁଥାନ୍ତି ଏଣେତେଣେ । ଦିନଟା ଖୁବ୍ ସୁନ୍ଦର ହୋଇଥାଏ । ଆକାଶରେ ମେଘ ନ ଥାଏ । ସୁନ୍ଦର ସୂର୍ଯ୍ୟ କିରଣରେ ଚାରିଆଡ଼ ଝଟକୁଥାଏ ।

ପକ୍ଷୀମାନଙ୍କର ମଧୁର କଳରବରେ ଏବଂ ବୃକ୍ଷଲତାମାନଙ୍କର ଅଗଣିତ ପୁଷ୍ପରାଜ ଦ୍ୱାରା ସମସ୍ତେ ଅପୂର୍ବ ଆନନ୍ଦ ଅନୁଭବ କରୁଥାଆନ୍ତି । ଏଭଳି ଗୋଟିଏ ଦିନରେ ମଜା କରିବାକୁ କାହାର ବା ଇଚ୍ଛା ନ ହେବ ! ଦଳ ଦଳ ପିଲାଙ୍କୁ ଆଖିଆଗରେ ଯାଉଥିବାର ଦେଖି ପହଁରିବାକୁ ଯିବାଲାଗି ଟମ୍‌ର ଖୁବ୍ ଇଚ୍ଛା ହେଲା । କିନ୍ତୁ ସେ ଯିବ କପରି ? ତେଣେ ପୋଲି ମାଉସୀ ଯେ ତା ଉପରେ କଡ଼ା ନଜର ରଖିଛନ୍ତି ।

ଘର ଭିତରୁ ବାହାର ପଦାକୁ ଆସିଲା ଟମ୍ । ମୁହଁଟା ମଉଳି ଯାଇଥାଏ । ଗୋଟିଏ ହାତରେ ଧରିଥାଏ ଖଣ୍ଡେ ଲମ୍ବା ବ୍ରୁସ୍ । ଆଉ ଗୋଟିଏ ହାତରେ ଧରିଥାଏ ଗୋଟିଏ ବାଲ୍‌ଟି । ତା ଭିତରେ ଥାଏ ପୂରା ବାଲ୍‌ଟିଏ ଚୂନପାଣି । ମାଉସୀ ପଟାବାଡ଼ରେ ଚୂନ ଦେବାପାଇଁ ତାକୁ ବରାଦ କରିଥାଆନ୍ତି ! ବାଡ଼ ଉପରେ ଦୃଷ୍ଟି ପକାଇଲା ଟମ୍ । ତାହାର ମୁହଁଟା ଝାଉଁଳିଗଲା ଆହୁରି ବେଶୀ । "ଇସ୍, ବାଡ଼ଟା କେତେ ଉଚ୍ଚ ! ଲମ୍ବାରେ ବି କିଛି କମ୍ ନୁହେଁ !" ଟମ୍ ଅସ୍ଥିର ହୋଇ ପଡ଼ିଲା । କପରି ଚୂନଦିଆ କାମ ସାରିବ ସେ କଥା ସେ ଭାବି ପାରିଲାନି । ଚୂନପାଣିରେ ବ୍ରୁସ୍‌ଟି ବୁଡ଼ାଇଲା । ତା ପରେ ବ୍ରୁସ୍ ନେଇ ଧୀରେ ଧୀରେ ପଟା ଉପରେ ବୁଲାଇ ଆଣିଲା । ଭଲ ଭାବରେ ଚୂନ ଧରୁ ନ ଥାଏ । ବାରମ୍ବାର ଚେଷ୍ଟା କଲେ ବି ସେ ଅକୃତକାର୍ଯ୍ୟ ହେଲା । ଅସହାୟ ମନେକଲା । ଲଥ୍‌କିନା ବସିପଡ଼ି ସେ ଦୀର୍ଘଶ୍ୱାସ ଛାଡ଼ିବାରେ ଲାଗିଲା ।

ଏହିପରି ସମୟରେ ଟମ୍ ଆଖିରେ ପଡ଼ିଲା ଜିମ୍ । କେବେ କେମିତି ଘରେ ଜଞ୍ଜାଳିଆ କାମ ପଡ଼ିଲେ ଜିମ୍, ମାଉସୀଙ୍କୁ ସାହାଯ୍ୟ କରେ । ପାଣି ପମ୍ପ୍‌ରୁ କିଛି ପାଣି ଆଣିବା ପାଇଁ ସେ ହାତରେ ଗୋଟିଏ ବାଲ୍‌ଟି ଧରି ଯାଉଥାଏ । ଟମ୍ ଭାବିଲା, "ଅନ୍ୟ ସାଙ୍ଗ

ପିଲମାନେ ନିଶ୍ଚୟ ସେଇ ପମ୍ପ ପାଖରେ ଥିବେ । ପମ୍ପରୁ ପାଣି ଆଣିବା ଅବଶ୍ୟ କଷ୍ଟକର କାମ । କିନ୍ତୁ ଚୂନ ଦେବାଠାରୁ ଏ କାମ ନିଶ୍ଚୟ ସହଜ ।” ଏହାଭାବି ସେ ଜିମ୍‌କୁ ଡାକିଲା । କହିଲା, “ଜିମ୍, ମୋ ହାତକୁ ବାଲ୍‌ଟିଟା ଦେ । ମୁଁ ପମ୍ପରୁ ପାଣି ଆଣି ଦେଉଛି । ତୁ ଏଇ ବାଡ଼ରେ ଚୂନ ଲଗାଉଥା ।” ଜିମ୍ କହିଲା, “ନା, ନା, ମୁଁ ସେ କାମ କରିବି ନାହିଁ । ତୋତେ କାମରେ ସାହାଯ୍ୟ ନ କରିବାକୁ ବୁଢ଼ୀ ନିଷେଧ କରିଛନ୍ତି । ତୋତେ ନିଜ ହାତରେ ସେ କାମ କରିବାକୁ ପଡ଼ିବ ।”

“ଦେଖ ଜିମ୍, ତୁ ଯେବେ ବାଲ୍‌ଟିଟା ମୋ ହାତକୁ ଦେଇ ମୋ ପାଇଁ ଏଇ ଚୂନ କାମଟା କରିଦେବୁ ତାହାହେଲେ ତୋତେ ଗୋଟିଏ ବଡ଼ିଆ ଗୋଲି ଦେବି ।”

“ଗୋଲି ! କେମିତିକା ଗୋଲି ମୋତେ ଦେଖାଇଲୁ !”

ଟମ୍ ଗୋଲିଟି ବାହାର କରି ହାତରେ ଧରିଥାଏ । ଜିମ୍ ଗୋଲିଟି ଦେଖିଲା । ଖୁସି ହେଲା । ବାଲ୍‌ଟିଟି ତଳେ ରଖି ଜିମ୍ ହାତରୁ ଗୋଲିଟି ନେଲା । ପୋଲି ମାଉସୀ ନିକଟରେ ରହି ତାହାର ଗତିବିଧି ଲକ୍ଷ୍ୟ କରୁଥିଲେ ।

ପାଦରୁ ଜୋତା କାଢ଼ି ସେ ଜିମ୍‌କୁ ଖୁବ୍ ଜୋରରେ ମାଡ଼ ଦେଲେ । ଅଚାନକ ଭାବରେ ମାଡ଼ଖାଇ ଜିମ୍ ଚମକି ପଡ଼ିଲା । ତୁରନ୍ତ ବାଲ୍‌ଟି ଉଠାଇ ପମ୍ପକୁ ଯାଇଥିବା ରାସ୍ତାରେ ଦୌଡ଼ିଲା । ବ୍ରୁସ୍ ଉଠାଇ ଟମ୍ ଦ୍ରୁତଗତିରେ କାମରେ ଲାଗିଲା । ପୋଲି ମାଉସୀ ଘର ଭିତରକୁ ଫେରିଗଲେ ।

ଟମ୍ କାମ ବନ୍ଦ କଲା । ପୁଣି ଧୀରସ୍ଥିର ଭାବରେ ବସିଗଲା । ପକେଟ୍ ଭିତରେ ଯେତେ ଯାହା ଜିନିଷ ଥିଲା ସବୁଯାକ ବାହାର କଲା । ଜିନିଷ ଭିତରେ ଥାଏ କେତେଗୁଡ଼ିଏ ଗୋଲି, କେତେଖଣ୍ଡ

ସୂତା ଏବଂ ଦୁଇଟା କ ତିନିଟା ଭଙ୍ଗା ଖେଳନା । ମନେ ମନେ ଭାବିଲା, "ଏଇମାନ୍ର ଜିନିଷ ପାଇଁ କେହି କେବେ ଚୂନ ଦେବା କାମ କରିବାକୁ ରାଜି ହେବ ନାହିଁ । ମୋତେ ଅନ୍ୟ କିଛି ଉପାୟ ଉଦ୍ଭାବନ କରିବାକୁ ପଡ଼ିବ ।" ସେ ଚିନ୍ତା କରିବାରେ ଲାଗିଲା । ଖୁବ୍ ଶୀଘ୍ର ତାକୁ ଏକ ସୁନ୍ଦର ଉପାୟ ମିଳିଗଲା ।

ବ୍ରୁସ୍ ଧରି ସେ ପୁଣି କାମରେ ଲାଗିପଡ଼ିଲା । ବେନ୍ ରୋଜର୍ସଙ୍କୁ ରାସ୍ତାରେ ଆସୁଥିବାର ଦେଖିଲା । କିନ୍ତୁ ତାକୁ ଦେଖିବା ପରି ଛଳନା କଲା । ମନ-ପ୍ରାଣ ଲଗାଇ କାମ କରିବାରେ ଅଭିନୟ କରୁଥାଏ । ଆପଲଟିଏ ଖାଇ ଖାଇ ବେନ୍ ଆସି ସେଠାରେ ପହଞ୍ଚିଲା । ଖୁବ୍ ଖୁସି ଥିବା ପରି ଜଣାପଡ଼ୁଥାଏ । ଟମ୍‌ର କାମ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲା । ପଚାରିଲା, "ଟମ୍, ଏଇ ଛୁଟି ଦିନଟାରେ କାମ କରୁଛୁ କାହିଁକି ?"

କିଛି ନ କହି ଟମ୍ ଚୂନଦେବା କାମରେ ଲାଗିଥାଏ । ତାକୁ ଦେଖିଲେ ଜଣାପଡ଼ୁଥାଏ ମତେ ଯେପରି ସେ ସେଇ କାମ ଭିତରେ ନିଜକୁ ହଜାଇ ଦେଇଛି ।

ବେନ୍ ପୁନଶ୍ଚ କହିଲା, "ଏଇ ଛୁଟି ଦିନଟାରେ ତୁ କାମ କରୁଛୁ ଟମ୍ !"

"ଆରେ, ତୁ ବେନ୍ ନା କଣ ? କେତେବେଳ ହେଲା ଆସିଲୁଣି ? ମୁଁ ଏ ପର୍ଯ୍ୟନ୍ତ ତୋତେ ଦେଖିପାରି ନ ଥିଲି ।"

"ମୁଁ ପହଁରିବାକୁ ଯାଉଛି । ତୁ କଣ ଯିବୁ ନାହିଁ ? ଦେଖୁଛି ଏଇ କାମଟାରେ ତୋର ବଡ଼ ମନ ଲାଗିଯାଇଛି ।"

ଟମ୍ ଗମ୍ଭୀରଭାବରେ ଧୀରେ ଧୀରେ କହିଲା, "ଏଇଟା କାମ ନୁହେଁ ।" ମୁହଁ କଥା କହୁଥାଏ, କିନ୍ତୁ ହାତ ତାହାର କାମ କରି ଚାଲିଥାଏ ।

ବେନ୍ ଚିତ୍କାର କରି କହିଲା, "ଏଇଟା କାମ ନୁହେଁ ତ ଆଉ କ'ଣ ?"

"ସତରେ ଏଇଟା କାମ ନୁହେଁ । ଚୂନ ଦେବାରେ ଏମିତି ମଜା ଅଛି ଯେ ତାହାକୁ କାମ ବୋଲି କହିବା ଭୁଲ ହେବ । ମୋତେ ଚୂନ ଦେବାକୁ ଖୁବ୍ ଖୁସି ଲାଗେ । ତୁ ବୋଧହୁଏ କେବେ ଚୂନ ଦେଇନାହୁଁ ।"

"ତୋର ଅନୁମାନ ସତ । ଏଇ ଚୂନଦେବା କାମ ମୁଁ କେବେହେଲେ କରି ନାହିଁ ।"

ବେନ୍ କିଛି ସମୟ ପାଇଁ ସେଠାରେ ଛିଡ଼ାହୋଇ ଟମ୍‌ର କାମ ଦେଖିଲା । ଟମ୍ ତା ଆଡ଼କୁ ଟିକେହେଲେ ନ ଚାହିଁ ନିଜ କାମରେ ଲାଗିଥାଏ । ଶେଷରେ ବେନ୍ କହିଲା, "ଟମ୍, ମୋତେ କଣ ଟିକେ ଚୂନ ଦେବାକୁ ଛାଡ଼ିବୁ ନାହିଁ ?"

"ନା, ବେନ୍, ତାହା କିପରି ହେବ ? ଚୂନଦେବା ପରେ ବାଡ଼ଟା ଯେପରି ଖୁବ୍ ସୁନ୍ଦର ଦେଖାଯିବ ମୁଁ ସେଥିପାଇଁ ଚେଷ୍ଟା କରୁଛି । ସୁନ୍ଦର କରିଦେଇ ପାରିବ ବୋଲି ପୋଲି ମାଉସୀଙ୍କୁ ଜବାବ ଦେଇଛି ।"

ବେନ୍ ଖୁବ୍ ବିନୀତଭାବରେ କହିଲା, "ବେଶୀ ନୁହେଁ, ଅଳ୍ପ କିଛି ସମୟ ଲାଗି ସେ କାମ କରିବାକୁ ମୋତେ ଛାଡ଼ି ଦେ ।"

"ସେ କଥା ମୋତେ କହ ନାହିଁ, ବେନ୍ । ମାଉସୀ କହିଛନ୍ତି ଯେ ମୁଁ ନିଜେ ଏହି କାମ ଶେଷ କରିବି । ତୁ ଯେବେ ବ୍ରସ୍ ଧରୁ କେଉଁଠି କଣ ଭୁଲ କରି ପକାଇବା ଅସମ୍ଭବ ନୁହେଁ । ସେପରି କଲେ ମୋର ସବୁ ଉଦ୍ୟମ ପଣ୍ଡ ହେବ । ଚାହିଁଲୁ, ବର୍ତ୍ତମାନ ଏ ବାଡ଼ କି ସୁନ୍ଦର ଦେଖାଯାଉଛି !"

ମୁଁ ଭୁଲ ନ କରିବାକୁ ଖୁବ୍ ସାବଧାନ ହେବି । ତୁ ଯେବେ ମୋତେ ଏ କାମ କରିବାକୁ ଛାଡ଼ିଦେବୁ ତାହାହେଲେ ମୋ ଆପଲଟା ତୋତେ ଖାଇବାକୁ ଦେବି !"

ନିଜର ଅନିଚ୍ଛାସତ୍ତ୍ୱେ ଟମ୍ ଧୀରେ ଧୀରେ ବେନ୍‌ର ହାତକୁ ବ୍ରସ୍‌ଟି ବଢ଼ାଇ ଦେଲା । ବେନ୍ ଖୁବ୍ ଜୋର୍‌ରେ କାମ କରିବାରେ ଲାଗିଲା । ଗମ୍ ଗମ୍ ହୋଇ ତା ଦେହରୁ ଝାଳ ନିଗିଡ଼ି ପଡ଼ୁଥାଏ । ତଥାପି ସେ ହାତ ବନ୍ଦ କରୁ ନ ଥାଏ । ଟମ୍ ସେଠାରେ ବସି ତାହାର କାମ ଦେଖୁଥାଏ ଏବଂ ସେ ଦେଇଥିବା ଆପଲଟି ଖାଉଥାଏ ।



ବହୁତ ସମୟ ଚାଲିଗଲା । ଆସ୍ତେ ଆସ୍ତେ ଅନ୍ୟାନ୍ୟ ପିଲାମାନେ ଆସି ସେଠାରେ ଜମିଗଲେ । ପ୍ରଥମେ ପ୍ରଥମେ ସେମାନେ ଟମ୍ ଓ ବେନ୍‌ର କାମ ଦେଖି ହସିଲେ । ମାତ୍ର ପରେ ପରେ ସେମାନଙ୍କର ମଧ୍ୟ ଚୂନ ଦେବାକୁ ମନ ବଳିଲା । ଅବଶ୍ୟ ସେହି କାମ କରିବାର

ସୁଯୋଗ ପାଇବା ପାଇଁ ସେମାନେ ଟମ୍‌କୁ ଅନେକ ଜିନିଷ ଦେଲେ। ସେଥିପାଇଁ ଟମ୍ ବାରଟା ଗୋଲି, ଟିଣରେ ତିଆରି ହୋଇଥିବା ଗୋଟିଏ ଲଢୁଆ ସୈନ୍ୟ, ଗୋଟିଏ ଗୁଳିକାଠି, ଗୋଟିଏ କୁକୁର ବେଲ୍ଟ ଏବଂ ଗୁଡ଼ିଏ କମଳା ପାଇଲା। ବସି ବସି ସମୟ କାଟିଲା ଟମ୍। ଅଥଚ ବାଡ଼ ଉପରେ ଥର ଥର କରି ତିନିଥର ଚୂନ ବୋଳାଗଲା!

## ଟମ୍ ମନରେ ଆନନ୍ଦ ଏବଂ ବିଷାଦ

ଚୂନ ଦିଆ କାମ ସରିଗଲା। ଘର ଭିତରକୁ ଯାଇ ଟମ୍ ପଚାରିଲା, "ମାଉସୀ, ଏଥର ମୁଁ ଖେଳିବାକୁ ଯାଇ ପାରିବି କି ?"

"ଚୂନ ଦେବା କାମ ଶେଷ କରିଛୁ ?"

"ହଁ, ମାଉସୀ ! ସମସ୍ତ ବାଡ଼ ଚୂନ ଦେଇ ସାରିଛି।"

"ଶେଷ କରି ଦେଇଛୁ ? ତୋ କଥାରେ ମୋର ପରତେ ଆସୁ ନାହିଁ। ନିଜେ ଯାଇ ମୋତେ ଦେଖିବାକୁ ପଡ଼ିବ।"

ବାଡ଼ ଦେଖିବା ପାଇଁ ପୋଲି ମାଉସୀ ବାହାରକୁ ଗଲେ। କାମ ଦେଖି ତାଙ୍କର ବିସ୍ମୟର ସୀମା ରହିଲା ନାହିଁ। ସେ ନିଜ ଆଖିକୁ ବିଶ୍ୱାସ କରି ପାରିଲେ ନାହିଁ !

କହିଲେ, "ଟମ୍, ତୋ କାମକୁ ତାରିଫ୍ ନ କରି ରହିପାରୁ ନାହିଁ। ମନ ମାନିଥିଲେ ତୁ ବେଶ୍ କାମ କରୁ। ମାତ୍ର ଅଧିକାଂଶ ସମୟରେ ତୁ କାମ କରିବାକୁ ଇଚ୍ଛା କରୁ ନାହିଁ। ମୁଁ କଣ ମିଛ କହୁଛି ? କଣ କହୁ ନାହିଁ ?" —"ଠିକ୍ ଅଛି; ଯାଆ, ଖେଳି ଆସିବୁ। କିନ୍ତୁ ଫେରିବାରେ ବିଳମ୍ବ କରିବୁ ନାହିଁ !" ପୋଲି

ମାଉସୀ ଆଲମାରିରୁ ବଡ଼ିଆ ଆପଲଟିଏ ବାହାର କଲେ ଏବଂ ହସି ହସି ଟମ୍ ହାତକୁ ବଢ଼ାଇ ଦେଲେ ।

ହାତରେ ଆପଲଟି ଧରି ଟମ୍ ଧାଇଁ ପଳାଇଲା । ରାସ୍ତାରେ ସିଡ୍‌କୁ ଦେଖି ସେ ତା ଉପରକୁ କେତେଗୁଡ଼ିଏ ଗୋଡ଼ି ମାରିଲା । ତାପରେ ଦୌଡ଼ିଲା ଗାଁ ଭିତରକୁ । ତାହାର ସାଙ୍ଗମାନଙ୍କ ମଧ୍ୟରୁ ଅଧିକାଂଶ ସାଙ୍ଗ ଥାଆନ୍ତି ସେହିଠାରେ । ସେମାନେ ଦୁଇଦଳ ସୈନ୍ୟବାହିନୀରେ ବିଭକ୍ତ ହେଲେ । ଟମ୍ ଗୋଟିଏ ଦଳର ସେନାଧ୍ୟକ୍ଷ ହେଲା । ତାହାର ସାଙ୍ଗ ଯୁ-ହାର୍ ପାର୍ ହେଲା ଅନ୍ୟ ଦଳର ସେନାଧ୍ୟକ୍ଷ । ଦୁଇଦଳ ମଧ୍ୟରେ ଭୟାନକ ଯୁଦ୍ଧ ଚାଲିଲା ଏବଂ ଶେଷରେ ଟମ୍‌ର ଦଳ ବିଜୟ ଲାଭ କଲା । ଲଢ଼େଇ ପରେ ସବୁଯାକ ପିଲା କ୍ଳାନ୍ତ ହୋଇ ପଡ଼ିଲେ ଏବଂ ସମସ୍ତେ ଯେ ଯାହାର ଘରକୁ ଫେରିଲେ ।

ଘରକୁ ଫେରିବାବେଳେ ଟମ୍‌କୁ ସେଇ ପୂର୍ବ ବର୍ଣ୍ଣିତ ଅଶାନ୍ତ ପିଲାର ଘର ଅତିକ୍ରମ କରି ଯିବାକୁ ପଡ଼ିଲା । ବାଡ଼ ଉପର ଦେଇ ସେ ଭିତରେ ଥିବା ବଗିଚାକୁ ଚାହିଁଲା । ଭାବିଥିଲା, ସେଠାରେ ତାହାର ଶତ୍ରୁକୁ ଦେଖିବାକୁ ପାଇବ । ମାତ୍ର ସେହି ପିଲା ସେଠାରେ ନ ଥିଲା । କିନ୍ତୁ ସେଠାରେ ସେ ଗୋଟିଏ ଝିଅକୁ ଦେଖିଲା ।

ଝିଅଟିର ଅପରୂପ ଶୋଭା ତାହାର ଆଖି ଟାଣିନେଲା । ଏହି ଜଗତ ଭିତରେ ତାହାଠାରୁ ଅଧିକ ସୁନ୍ଦରୀ ଝିଅ ଆଉ କେହି ଥାଇପାରେ ବୋଲି ସେ ବିଶ୍ୱାସ କରି ପାରିଲା ନାହିଁ । କାଠ ପରି ଛିଡ଼ା ହୋଇ ରହିଲା ଗୋଟିଏ ଜାଗାରେ । ଝିଅଟିକୁ ଚାହିଁଥାଏ ଅପଲକ ଦୃଷ୍ଟିରେ । ଝିଅଟି ତାହା ଆଡ଼କୁ ଚାହୁଁ ନ ଥାଏ । କିଛି ସମୟ ପରେ ସେ ଧୀରେ ଧୀରେ ଘର ଆଡ଼କୁ ଅଗ୍ରସର ହେଲା । ସାମ୍ନା ଦରଜା ପାଖରେ ପହଞ୍ଚି ସେ ହଠାତ୍ ମୁହଁ ଫେରାଇ ପଛକୁ ଚାହିଁଲା । ବାଡ଼ ଉପର ଦେଇ ଗୋଲାପ ଫୁଲଟିଏ ଫିଙ୍ଗିଲା ଟମ୍

ଉପରକୁ । ଟମ୍ ଦୌଡ଼ଯାଇ ଫୁଲଟି ଧରି ନେଲା । ତାହା'ନେଇ ଯତ୍ନ ସହକାରେ କୋଟ୍ ଭିତରେ ରଖିଲା । ଝିଅଟି ଆଉଥରେ ଘର



ଅଗଣାକୁ ବାହାରିଥାନ୍ତା—ଏଇ ଆଶାରେ ସେ ଅପେକ୍ଷା କରି ରହିଲା । ଅନ୍ଧାର ମାଡ଼ି ଆସିଲା । କିନ୍ତୁ ଝିଅଟି ଆଉ ଘର ଭିତରୁ ବାହାରିଲା ନାହିଁ । ଧୀରେ ଧୀରେ ଚିନ୍ତିତଭାବରେ ଟମ୍ ନିଜର ଘରକୁ ଫେରିଲା ।

ଘରେ ପହଞ୍ଚି ଦେଖେ ତ ପୋଲି ମାଉସୀ ରାଗରେ ଅଗ୍ନି ଶର୍ମା । ରାଗିବାର କାରଣ ହେଉଛି ଘରୁ ଯିବାବେଳେ ଟମ୍ ସିଦ୍ ଉପରକୁ ଟୋଡ଼ି ଫିଙ୍ଗି ଥିଲା । ତା'ଛଡ଼ା ସେ ତାଙ୍କ ଆଲମିରାରୁ କିଛି ଚିନି ଚୋରି କରି ଖାଇଥିଲା । ପୋଲି ମାଉସୀ କହିଲେ, "ସିଦ୍ ତୋ ଅପେକ୍ଷା ଭଲ ପିଲା ।" କାଣ ଗୋଟିଏ ଜିନିଷ ଆଣିବାଲାଗି ସେ

ଶୋଇବାଘରକୁ ଚାଲିଗଲେ । ଇତ୍ୟବସରରେ କିଛି ଚିନି ନେଇଯିବ ଭାବି ସିଦ୍ ହାତ ବଢ଼ାଇଲା । ଦୈବଯୋଗକୁ ତାହାର ହାତବାଜି ଟେବୁଲ ଉପରୁ ଚିନିପାତ୍ରଟି ତଳେ ପଡ଼ିଗଲା । ଭଙ୍ଗା କାଚସବୁ ଛିନ୍ନଛତର୍ ହୋଇ ଚଟାଣରେ ପଡ଼ିଥାଏ । ଟମ୍ ଭାବିଲା, "ଏଇ କାଣ୍ଡରୁ ପୋଲି ମାଉସୀ ବେଶ୍ ଜାଣିପାରିବେ ଯେ ସିଦ୍ ଭଲ କି ମୁଁ ଭଲ ।" କାଚ ଭାଙ୍ଗିବା ଶବ୍ଦ ପାଇ ପୋଲି ମାଉସୀ ଦୌଡ଼ି ଆସିଲେ । ଚିନି ପାତ୍ର ଭାଙ୍ଗି ପଡ଼ିଥିବାର ଦେଖି ରାଗରେ ତାଙ୍କର ତାଳୁରୁ ତଳିପା ପର୍ଯ୍ୟନ୍ତ ଜଳିଗଲା । ସିଧାସଳଖ ଭାବରେ ଯାଇ ସେ ଟମ୍‌କୁ ଖୁବ୍ ଜୋର୍‌ରେ ଆଘାତ କଲେ ।

ଟମ୍ କହିଲା, "ମାଉସୀ, ମୋତେ ପିଟୁଛ କାହିଁକି ? ମୁଁ ତ କିଛି ଦୋଷ କରି ନାହିଁ ।"

ରାଗ ଜର ଜର ହୋଇ ମାଉସୀ କହିଲେ, "ଚୁପ୍ ରହ, ତୁ ଖୁବ୍ ଦୁଷ୍ଟ ହୋଇଯାଇଛୁ ।"

ଟମ୍ ମନେ ମନେ ବଡ଼ ଦୁଃଖ କଲା । ଭାବିଲା, "ବଞ୍ଚିଥିବାଯାକେ ମାଉସୀଙ୍କ ଆଖିରେ ମୁଁ କେବେହେଲେ ନିର୍ଦ୍ଦୋଷ ହୋଇପାରିବି ନାହିଁ । ମଲା ପରେ ଯାଇ ସେ ମୋ ପାଇଁ ଦୁଃଖ ପ୍ରକାଶ କରିବେ । ତାହା କିଛି ଆଜି-କାଲିର କଥା ନୁହେଁ । ସେ କଥା ହେବାପାଇଁ ବହୁତ ବିଳମ୍ବ ହେବ ।" ଟମ୍ ମନରେ ଉଠିଲା କୋହ । ଆଖିରୁ ଝରିଲା ଲୁହ ।

ମୁହୂର୍ତ୍ତ କେତେଟା ଅପସରି ଗଲା । ବସିବା ଜାଗାରୁ ଉଠି ଟମ୍ ଚାଲିଲା ଆଗକୁ । ଘରଠାରୁ ଦୂରେଇଗଲା । ମୁଣ୍ଡରେ ବହୁ ଦୁଶ୍ଚିନ୍ତା । ନଈକୂଳରେ ବସିଲା । ପାଖରେ ଥିବା ଗୋଲାପ ଫୁଲଟି ବାହାର କଲା । ଏ ପାଖ ସେ ପାଖ ଚାହିଁଲା ମନ ଦୁଃଖରେ । ଭାବିଲା, "ସେଇ

ହିଁ ଅଛି କ'ଣ ମାଉସୀଙ୍କ ପରି ମୋ ପ୍ରତି ନିର୍ଦ୍ଦୟା ହେବ ?" ମନକୁ ସନ୍ଦେହ ଛୁଇଁଲାନି ।

ଟମ୍ ତାହାର ଘର ପାଖକୁ ଗଲା । କଳା କଟିକଟି ଅନ୍ଧାର ଘୋଟି ରହିଥାଏ ଚାରିଆଡ଼େ । ଗୋଟିଏ ଝରକା ପାଖରେ ଦକଦକ ହୋଇ ଆଲୁଅଟିଏ ଜଳୁଥାଏ । ସେ ଆଉ ସେହିଠାରେ ଅଛି କି ? ବାଡ଼ ଡେଇଁ ଝରକା ପାଖକୁ ଗଲା । ହାତରେ ପୂର୍ବର ସେଇ ଚୋଲପ ଫୁଲଟି ଧରିଥାଏ । ଭାବିଲା, "ଏଇଠାରେ ମୋର ପ୍ରାଣବାୟୁ ଉଡ଼ିଯା'ନ୍ତା କି ? ମୋର ମଲା ଦେହଟା ଦେଖି ତାହାର ମନ କଣ ହୁଅନ୍ତା ? ସେଥିପାଇଁ କଣ ତା ଆଖିରୁ ଲୁହ ଝରନ୍ତା ?"

ହଠାତ୍ ଗୋଟିଏ ଝରକା ଖୋଲିଗଲା । ଜଣେ କେହି ଟମ୍‌ର ମୁଣ୍ଡ ଉପରେ ଗୁଡ଼ାଏ ପାଣି ଅଜାଡ଼ି ଦେଲା । ସମ୍ଭବତଃ ସେମାନେ ଟମ୍‌କୁ ଗୋଟିଏ ବିରାଡ଼ି ବୋଲି ଭାବିନେଲେ । ଟମ୍ ଘରମୁହାଁ ହୋଇ ଦୌଡ଼ି ପଳାଇଲା ।

## ମୁମୂର୍ଷୁ ଟମ୍

ସୋମବାର । ସକାଳ । ସୋମବାରଗୁଡ଼ିକୁ ଟମ୍ ବଡ଼ ଘୃଣା କରେ । ସୋମବାରଠାରୁ ପୁଣି ସ୍କୁଲ ଆରମ୍ଭ ହୁଏ । ପୂରା ଗୋଟିଏ ସପ୍ତାହ ଧରି ସ୍କୁଲ ହୁଏ । ସ୍କୁଲକୁ ଯିବାରେ ଟମ୍‌ର କେବେହେଲେ ଆଗ୍ରହ ନ ଥାଏ । ବିଛଣାରେ ପଡ଼ି ରହି ଗୋଟିଏ କିଛି ଉପାୟ ଉଦ୍ଭାବନ କରିବା ପାଇଁ ମନେ ମନେ ଚିନ୍ତା କରୁଥାଏ । କୌଣସି-ମତେ ପୀଡ଼ିତ ହୋଇପଡ଼ିଲେ ତାକୁ ସ୍କୁଲ ଯିବାରୁ ଅବ୍ୟାହତି ମିଳନ୍ତା । କିନ୍ତୁ ସେ ତ' ଅସୁସ୍ଥ ନୁହେଁ । ତାହାର ମୁଣ୍ଡ ଭଲ

ଲାଗୁଛି । ତାହାର ପେଟରେ କିଛି ଗଣ୍ଡଗୋଳ ନାହିଁ । ଗୋଟିଏ ଦାନ୍ତ ହଲୁଛି । ସେଇଟା ଯାହା ବେଳେବେଳେ ବିନ୍ଧୁଛି । ସେ ଯେବେ ମାଉସୀଙ୍କୁ ଦାନ୍ତ ହଲିବା କଥା କହିବ ତେବେ ତାହାର ନିସ୍ତାର ନାହିଁ । ସେ ସଙ୍ଗେ ସଙ୍ଗେ ଦାନ୍ତଟିକୁ ଉପାଡ଼ି ଦେବେ । ନା, ଏଇ ଦାନ୍ତର ପେଖନା ଦେଖାଇ ସେ ଘରେ ରହିଯାଇ ପାରିବ ନାହିଁ । ତାହାହେଲେ ସେ କି ଉପାୟ କରିବ ? ହଠାତ୍ ତାହାର ଗୋଟିଏ କଥା ମନେ ପଡ଼ିଗଲା । ସପ୍ତାହେ ପୂର୍ବରୁ ସେ ତାହାର ଗୋଡ଼ ଆଙ୍ଗୁଳିଟି କାଟି ଦେଇଥିଲା । ବର୍ତ୍ତମାନ ତାହା ବିଷାକ୍ତ ହୋଇଯାଇଛି ବୋଲି ପେଖନା କାଢ଼ିବ । ସେଭଳି ପରିସ୍ଥିତିରେ ତାହାକୁ ସ୍କୁଲକୁ ଯିବାକୁ ପଡ଼ିବ ନାହିଁ ।

ଯନ୍ତ୍ରଣାରେ ଛଟପଟ ହେଉଥିବା କୌଣସି ରୋଗୀ ପରି ସେ କୁନ୍ଥାଇବାକୁ ଲାଗିଲା । କ୍ରମେ ତାହାର ସ୍ୱର ଉଚ୍ଚରୁ ଉଚ୍ଚତର ହେଲା । କିନ୍ତୁ ସିଡ୍ ଉଠିଲା ନାହିଁ । ସେ ଆହୁରି ଜୋର୍‌ରେ କୁନ୍ଥାଇଲା । ତଥାପି ସିଡ୍ ନିଦରୁ ଉଠିଲା ନାହିଁ । ଟମ୍ ଚିତ୍କାର କରି କହିଲା, "ସିଡ୍ , ଶୀଘ୍ର ଉଠିପଡ଼ । ମୋର ପ୍ରାଣବାୟୁ ଉଡ଼ିଯିବାକୁ ବସିଛି ।" ଏହାପରେ ସେ ପୁଣି କୁନ୍ଥାଇବାକୁ ଲାଗିଲା ।

ସିଡ୍ ଚିନ୍ତିତ ହୋଇ ପଚାରିଲା, "ତୋର କ'ଣ ହେଲା, ଟମ୍ ? ମାଉସୀଙ୍କୁ ଡାକିବି କି ?"

"ନା, ନା, ସେକଥା କର ନାହିଁ । ମୋ ରୋଗ ତା' ଆପଣା ମନକୁ ଭଲ ହୋଇଯିବ ।" ଟମ୍ ପୁଣି କୁନ୍ଥାଇଲା ।

"ସେପରି କୁନ୍ଥା ନାହିଁ, ଟମ୍ । ତୁ ଏପରି କେତେବେଳୁ ହେଲୁଣି ?"

"ରାତିସାରା ମୁଁ ଏହିପରି କଷ୍ଟ ପାଉଛି । ସେଥିରେ କିଛି ଯାଏ ଆସେ ନାହିଁ । ମୁଁ ବର୍ତ୍ତମାନ ମୃତ୍ୟୁ ପଥର ଯାତ୍ରୀ । ମରିବାରେ ମୋର

ଆନନ୍ଦ । ସିଦ୍, ମୁଁ ତୋତେ କ୍ଷମା କରୁଛି । ମୁଁ ପ୍ରତ୍ୟେକଙ୍କୁ କ୍ଷମା କରୁଛି । ମୁଁ ମରିଗଲେ......"

"ମରିଗଲେ... !"

"ହଁ, ସିଦ୍ ! ମୋର ମରଣ ଆଉ ବେଶୀ ବିଳମ୍ବ ନୁହେଁ । ମରିଗଲା ପରେ ପୋଲି ମାଉସୀଙ୍କୁ କହିବୁ, 'ମଲାବେଳକୁ ମୋର ତାଙ୍କ ଉପରେ କିଛି ହେଲେ ରାଗ ଅଭିମାନ ନ ଥିଲା । ତାଙ୍କ ମାଡ଼ ମାରିବା କଥା ମୋ ମନରୁ ସମ୍ପୂର୍ଣ୍ଣରୂପେ ଲିଭି ଯାଇଥିଲା ।' ଆଉ ଗୋଟିଏ କଥା, ସିଦ୍ । ସେଠାରେ ଯେଉଁ ନୂଆ ଝିଅଟି ଅଛି, ତାକୁ ନେଇ ମୋ ବିରାଡ଼ିଟି ଦେବୁ । ତାକୁ କହିବୁ..."

ସେତେବେଳକୁ ସିଦ୍ କୋଠରି ଛାଡ଼ି ଚାଲି ଯାଇଥିଲା । ପାଟି କରି କରି ତଳମହଲାକୁ ଦୌଡ଼ିଲା । ଆକୁଳ ହୋଇ କହୁଥାଏ, "ମାଉସୀ, ମାଉସୀ କେଉଁଠି ଅଛ । ଧାଇଁ ଆସ । ଟମ୍‌ର ଅବସ୍ଥା ଉଦ୍‌ବେଗଜନକ । ସେ ମରିବାକୁ ବସିଲାଣି ।"

"ମରିବାକୁ ବସିଛି ! ସ୍ୟେ ତୁ କଣ କହୁଛୁ ?" ଏକ ଅଜଣା ଆତଙ୍କରେ ପୋଲି ମାଉସୀଙ୍କର ସର୍ବାଙ୍ଗ ସେଥା ପଡ଼ିଗଲା ।

"ଏତେ ସହସା ତାହାର ଅବସ୍ଥା ଉଦ୍‌ବେଗଜନକ ହେଲା କପରି !" ପୋଲି ମାଉସୀଙ୍କର ସନ୍ଦେହ ହେଲା । ତରତର ହୋଇ ସେ ଦୌଡ଼ିଲେ ଉପର ମହଲାକୁ ।

ଥରିଲା ସ୍ୱରରେ ପୋଲି ମାଉସୀ ପଚାରିଲେ, "ତୋର କ'ଣ ହେଉଛି, ଟମ୍ ?"

"ଓଃ ! ବଡ଼ ଯନ୍ତ୍ରଣା ହେଉଛି, ମାଉସୀ..."

ପୋଲି ମାଉସୀ ପୁନଶ୍ଚ ପଚାରିଲେ, "ତୋର କେଉଁଠି କ'ଣ ହେଉଛି ସେ କଥା ଫିଟାଇ ନ କହିଲେ ମୁଁ ଜାଣିବି କେମିତି ?"

"ମାଉସୀ, ମୋର ଏଇ ଗୋଡ଼ ଆଙ୍ଗୁଳିଟା କଷ୍ଟ ଦେଉଛି । ଆଙ୍ଗୁଳିଟା ବିଷାକ୍ତ ହୋଇଯାଇଛି !"

"ବିଷାକ୍ତ ହେଲା କିପରି ? ଆଚ୍ଛା, ମୋତେ ଦେଖାଇଲୁ ।" ଆଖିରେ ଚଷମା ଲଗାଇ ପୋଲି ମାଉସୀ ଆଙ୍ଗୁଳିଟି ଦେଖିଲେ । ତା ପରେ ଗୋଟିଏ ଚୌକିରେ ବସିଲେ । ହସ ମାଡ଼ୁଥାଏ । ପୁଣି ଆଖିକି ଲୁହ ଆସୁଥାଏ ।

କହିଲେ, "ଟମ୍, ତୋ ଗୋଡ଼ ଆଙ୍ଗୁଳିରେ କୌଣସି ପ୍ରକାର କ୍ଷତର ଚିହ୍ନ-ବର୍ଣ୍ଣ ସୁଦ୍ଧା ନାହିଁ । ଏହା ତୋର ଫିସାଦ ଭିନ୍ନ ଆଉ କିଛି ନୁହେଁ । ବିଛଣା ଛାଡ଼ି ସ୍କୁଲକୁ ଯିବା ପାଇଁ ପ୍ରସ୍ତୁତ ହୋଇ-ପଡ଼ି ।" ଟମ୍‌ର କୁନ୍ଥା ବନ୍ଦ ହୋଇଗଲା । କହିଲା, "ମାଉସୀ, କହୁ କହୁ ଭୁଲରେ ଗୋଡ଼ ଆଙ୍ଗୁଳି କଥା କହି ପକାଇଲି । ମୋର କଷ୍ଟ ହେଉଛି ଦାନ୍ତରେ ।"

"ଦାନ୍ତ ? ଦାନ୍ତରେ ପୁଣି କଣ ହେଲା ?"

"ଦାନ୍ତଟା ହଲୁଛି । ସେଥିପାଇଁ ଏପରି ବିନ୍ଧୁଛି ଯେ ସହି ହେଉ ନାହିଁ ।"

"ପାଟି ଆଁ କରୁ ।"

"ମାଉସୀଙ୍କ କଥା ମାନି ଟମ୍ ପାଟି ମେଲି କଲା ।" ପରୀକ୍ଷା କରି ମାଉସୀ କହିଲେ, "ହଁ, ଦାନ୍ତଟା ପ୍ରକୃତରେ ହଲୁଛି । ମାତ୍ର ଏହା ନିଶ୍ଚିତ ଯେ ସେଥିପାଇଁ ତୋର ପ୍ରାଣବାୟୁ ଉଡ଼ିଯିବ ନାହିଁ । ମେରି, ଚୁଲି ଭିତରୁ ଖଣ୍ଡେ ଗରମ କୋଇଲା ଓ ଟାଣ ସୂତା ଖଣ୍ଡେ ମୋ ପାଖକୁ ଆଣ ।"

ଏହାଶୁଣି ଟମ୍ ଚିତ୍କାର କରି ଉଠିଲା । ବିକଳଭାବରେ କହିଲା, "ଆଉ ମାଉସୀ, ଦାନ୍ତଟା ଉପାଡ଼ ଦିଅ ନାହିଁ । ମୋର ଆଉ କଷ୍ଟ ହେଉ ନାହିଁ । ଯାଉଛି, ସ୍କୁଲକୁ ଯିବା ପାଇଁ ପ୍ରସ୍ତୁତ ହେବି ।"

ମାଉସୀ କହିଲେ, "ହଁ, ଏଇଥର ଠିକ୍ ବୁଝି ପାଇଲି । ରୋଗଟା ଗୋଡ଼ ଆଙ୍ଗୁଳିରେ ନୁହେଁ କମ୍ବା ଦାନ୍ତରେ ନୁହେଁ । ସେଇ ସ୍କୁଲ୍ ହେଉଛି, ରୋଗର ମୂଳ କାରଣ । ସ୍କୁଲକୁ ଯିବାଲାଗି ତୋର ଜମାରୁ ଇଚ୍ଛା ନାହିଁ । ତୋର କେବଳ ମାଛ ଧରିବାକୁ ଯିବାର ଇଚ୍ଛା । ଏକଥା ମୁଁ ଭଲରୂପେ ଜାଣିଛି । ଟମ୍, ତୁ ଏପରି ହେଉଛୁ କାହିଁକି ? ତୋତେ ଏତେ ସ୍ନେହ କରିଥିଲି । ତାହାର ଫଳ କ'ଣ ଏଇୟା ?"



ସୂତା ଏବଂ ଜଳି ହିଂ ହିଂ ଜଳନ୍ତା କୋଇଲା ଖଣ୍ଡିଏ ଧରି ନେଇ ଆସି ପୋଲି ମାଉସୀଙ୍କ ପାଖରେ ଠିଆହେଲା । କୌଶଳ କରି ମାଉସୀ ସୂତାର ଗୋଟିଏ ମୁଣ୍ଡ ଟମ୍‌ର ହଲିଲା ଦାନ୍ତରେ ବାନ୍ଧି ଦେଲେ । ଆଉ ମୁଣ୍ଡଟି ଖଟ ଦଣ୍ଡାରେ ଗୁଡ଼ାଇଦେଲେ । ତାପରେ ଜଳନ୍ତା କୋଇଲା ଖଣ୍ଡଟିକୁ ହଠାତ୍ ଟମ୍‌ର ମୁହଁ ଆଡ଼କୁ ପାଖେଇ ନେଲେ । ଭୟରେ ଅସ୍ଥିର ହୋଇ ଟମ୍ ଖୁବ୍ ଶୀଘ୍ର ତାହାର ମୁଣ୍ଡ

ପଡ୍ଥାଇନେଲା । ଫଳରେ ତାହାର ହଲଲ ଦାନ୍ତଟା ସହଜରେ ଭାଙ୍ଗିଗଲା ।

ସ୍କୁଲକୁ ଯିବାବେଳେ ଟମ୍ ବାଟରେ ତାହାର ସାଙ୍ଗମାନଙ୍କୁ ଭଙ୍ଗା ଦାନ୍ତଟି ଦେଖାଇ ଖୁବ୍ ବାହାଦୁରୀ ଦେଖାଇଲା । ସେମାନେ ମଧ୍ୟ ମନେ ମନେ ଭାବିଲେ ଯେ ଟମ୍ ପ୍ରକୃତରେ ଖୁବ୍ ସାହସୀ । ତାପରେ ହାକଲ୍‌ବେରୀ ଫିନ୍ ସହିତ ଟମ୍‌ର ସାକ୍ଷାତ୍ ହେଲା ।

ଗାଁ ଭିତରେ ଥିବା ସବୁଯାକ ମାଆ ହାକଲ୍‌ବେରୀକୁ ଘୃଣା କରନ୍ତି । ତା ସହିତ ମିଳାମିଶା କରିବାଲାଗି ମାଆମାନେ ନିଜ ନିଜର ପିଲାମାନଙ୍କୁ ସବୁବେଳେ ନିଷେଧ କରନ୍ତି । ହାକଲ୍‌ବେରୀ ଖୁବ୍ ଅଳସୁଆ । କାମ-ଦାମ କରିବାକୁ କୁଣ୍ଠିତ । ପିନ୍ଧିବା ଲୁଗା ସବୁ ପୁରୁଣା ଚିରା ଏବଂ ନିତାନ୍ତ ଅସନା । ସ୍କୁଲକୁ ଯିବା ତା' ଜାତକରେ ମନା । ଶୋଇବା ପାଇଁ ତାହାର ବିଛଣା ଦରକାର ହୁଏ ନାହିଁ । ଯେଉଁଠି ସେଠି ଶୋଇପଡ଼େ ।

ହାକ୍‌ର ଲଗାମଛଡ଼ା ଜୀବନଯାତ୍ରା ଗାଁର ପିଲାମାନଙ୍କ ପକ୍ଷରେ ଅସହନୀୟ ହୁଏ । ସେ କେବେହେଲେ ଘଷି ମାଜ ହୁଏ ନାହିଁ । ତାକୁ କେହି କେବେହେଲେ ବଡ଼ ସକାଳେ ଉଠିବାର ଦେଖି ନାହିଁ । ଯେତେ ରାତି ହେଲେ ହେଉ ପଛକେ ମନ ନ ମାନିବା ପର୍ଯ୍ୟନ୍ତ ସେ ଘରକୁ ଫେରେ ନାହିଁ । ନିଜର ଇଚ୍ଛାନୁସାରେ ସେ ପହଁରେ, ମାଛ ଧରେ । ଭୁଲରେ ବି ସ୍କୁଲଘର ମାଡ଼େ ନାହିଁ । ତାକୁ ଦେଖି ପ୍ରତ୍ୟେକ ପିଲା ଭାବେ ସେ ହାକ୍ ହୋଇଥାନ୍ତା କି ! ଟମ୍ କିନ୍ତୁ ହାକ୍‌କୁ ଖୁବ୍ ଭଲ ପାଏ ।

ଟମ୍ ଡାକିଲା, "ହାକ୍ ! ହାକ୍ !"

"ହାଲୋ !"

ହାକ୍ ହାତରେ ଧରିଥିବା ଜନିଷଟି ଆଡ଼କୁ ଆଙ୍ଗୁଳି ଦେଖାଇ ଟମ୍ ପଚାରିଲା, "ସେଇଟା ଜନିଷଟି କ'ଣ ?"

"ଏଇଟା ଗୋଟିଏ ମଲା ବିରାଡ଼ି । ରାତିରେ ଏଇଟିକୁ ଶ୍ମଶାନକୁ ନେଇଯିବି ବୋଲି ଧରିଛି ।"

"ଶ୍ମଶାନକୁ ଯିବୁ ! ଆଜି ରାତିରେ !"

"ହଁ, ସେମାନେ ଆଜି ରାତିରେ ମାଟିତଳୁ ହର୍ସ ୱିଲିୟମ୍‌ର ଶବ ବାହାର କରିବେ । ସେ ଶନିବାରରୁ ମଲାଣି । ଡାକ୍ତର ରବିନ୍‌ସନ୍ ତାହାର ମୃତ ଦେହଟି ଦରକାର କରୁଛନ୍ତି ।"

ଟମ୍ କହିଲା, "ମୋତେ କାହିଁକି ତୋ ସହିତ ଯିବାକୁ ଇଚ୍ଛା ହେଉଛି ।"

"ନ ଡରିବୁ ତ' ତୋତେ ସାଙ୍ଗରେ ନେବାରେ ମୋର କୌଣସି ଆପତ୍ତି ନାହିଁ ।"

"ମୁଁ କେବେହେଲେ ଡରିବି ନାହିଁ ।"

"ତାହାହେଲେ ଅର୍ଦ୍ଧରାତ୍ର ହେଲେ ମୁଁ ତୋତେ ଡାକିବି ।"

ଅର୍ଦ୍ଧରାତ୍ର ହେଲା । ସମସ୍ତେ ନିଦ୍ରାଗତ । ହାକ୍ ଟମ୍‌କୁ ଡାକିଲା । ଟମ୍ ଜାଗିଥିଲା ବୋଧହୁଏ । ସଙ୍ଗେ ସଙ୍ଗେ ଦୁହେଁଯାକ ସାଙ୍ଗ ହୋଇ ବାହାରିଗଲେ ଶ୍ମଶାନକୁ ।

ସବୁଦିନ ପରି ଟମ୍ ବିଳମ୍ବରେ ସ୍କୁଲକୁ ଗଲା । କ୍ଲାସ୍ ଭିତରକୁ ପଶିବା ସଙ୍ଗେ ସଙ୍ଗେ ଶିକ୍ଷକ ଡାକି କହିଲେ, "ଥୋମାସ୍ ସୟାର୍, ପୁଣି ବିଳମ୍ବରେ ଆସିଲୁ । ଆଜି ବିଳମ୍ବ ହେବାର କାରଣ କ'ଣ ?"

କ'ଣ କହିବ ବୋଲି ଟମ୍ ମନେ ମନେ ଚିନ୍ତା କରୁଥାଏ । ଠିକ୍ ସେତିକବେଳେ ସୁନ୍ଦର ସେଇ ଝିଅଟି ଉପରେ ତାହାର ନଜର ପଡ଼ିଲା । ସେ ବସିଥିବା ଜାଗାର ପରବର୍ତ୍ତୀ ଜାଗା ଫାଙ୍କା ଥାଏ । କେହି ବସି ନ ଥାନ୍ତି । ମିଃ ଡବିନ୍‌ସ କ ଧରଣର ଶିକ୍ଷକ ସେକଥା

ଟମ୍‌କୁ ଭଲରୂପେ ଜଣାଥାଏ । ଭାବିଲା, ସେ ଯେବେ କୌଣସିମତେ ମିଃ ଓବିନ୍‌ସଙ୍କୁ ବିରକ୍ତ କରିଦେଇ ପାରିବ, ତାହାହେଲେ ସେ ନିଶ୍ଚୟ ତାକୁ ଝିଅମାନଙ୍କ ସହିତ ବସିବାକୁ ଆଦେଶ ଦେବେ । ମନକୁ ସାହସ ଆଣି ଟମ୍ କହିଲା,

"ସାର୍, ମୁଁ ହାକଲ୍‌ବେରି ଫିନ୍ ସଙ୍ଗେ କଥାବାର୍ତ୍ତା ହେଉଥିଲି ।" ଟମ୍‌ର କଥା ମିଃ ଓବିନ୍‌ସ ଶୁଣିଲେ ସତ, ମାତ୍ର ନିଜ କାନକୁ ବିଶ୍ୱାସ କରିପାରିଲେ ନାହିଁ । ବିସ୍ମିତ ହୋଇ ବଡ଼ପାଟିରେ କହିଲେ, "ତୁ ହାକଲ୍‌ବେରି ଫିନ୍ ସଙ୍ଗେ କଥାବାର୍ତ୍ତା ହେଉଥିଲୁ !"

ଟମ୍ ପୁଣି ଥରେ କହିଲା, "ହଁ, ସାର୍, ମୁଁ ହାକଲ୍‌ବେରି ସଙ୍ଗେ କଥାବାର୍ତ୍ତା ହେଉଥିଲି ।"

ମିଃ ଓବିନ୍‌ସଙ୍କର ଧୈର୍ଯ୍ୟଚ୍ୟୁତି ଘଟିଲା । ରାଗରେ ଅଗ୍ନିଶର୍ମା ହୋଇ ସେ ଟମ୍‌କୁ ପ୍ରହାର କରିବାକୁ ଲାଗିଲେ । କଷ୍ଟ ହେଲେ ବି ଟମ କାନ୍ଦୁ ନ ଥାଏ । ମନ୍ଦ କଣ୍ଠବରେ ଛିଡ଼ା ହୋଇଥାଏ ।

ତା ପରେ ଟମ୍ ଯାହା ଭାବିଥିଲା ସେଇକଥା ହେଲା । ଝିଅ-ମାନଙ୍କ ପାଖରେ ବସିବା ପାଇଁ ମିଃ ଓବିନ୍‌ସ ତାକୁ ଆଦେଶ ଦେଲେ ।

ଶିକ୍ଷକଙ୍କ ଆଦେଶ ଶୁଣି ସବୁଯାକ ପିଲା କରି କରି ହୋଇ ହସିବାରେ ଲାଗିଲେ । ତଳକୁ ମୁଣ୍ଡପୋତି ଟମ୍ କ୍ଲାସ୍‌ର ଯେଉଁ ପାଖରେ ଝିଅମାନେ ବସିଥିଲେ ସେହିଆଡ଼କୁ ଗଲା ।

ନୂଆ ହୋଇ ଆସିଥିବା ଝିଅଟି ପାଖରେ ବସିଲା । ବାହାରକୁ ଲଜ୍ଜା ଏବଂ ଦୁଃଖର ଆଭାସ ଦେଖାଉଥିଲେ ହେଁ ପ୍ରକୃତରେ ସେ ଖୁବ୍ ଖୁସି ଥାଏ ।

ଟମ୍ ଝିଅଟିକୁ ଚାହିଁଲା । ସେ ମୁହଁ ବୁଲାଇ ନେଲା । ଆମ୍ବଟିଏ ନେଇ ଟମ୍ ତାହାର ଡେସ୍କ ଉପରେ ରଖିଲା । ସେ ଆମ୍ବଟି ତା

ପାଖକୁ ଫେରାଇ ଦେଲା । ଟମ୍ ଆଡଟି ନେଇ ପୁଣି ତା ଆଗରେ ରଖିଲା । ଝିଅଟି ତା ଜାଗାରେ ବସିଥାଏ । ଥରେ ଥରେ ଆଡଟିକୁ ଗୁହୁଁଥାଏ । ତାପରେ ଟମ୍ ଚିତ୍ର ଆଙ୍କିବା ଆରମ୍ଭ କଲା । ଅଙ୍କିତ ଚିତ୍ରଟି ଦେଖିବା ପାଇଁ ଝିଅଟିର ଖୁବ୍ ଇଚ୍ଛା ହେଲା । ଟମ୍ ତାକୁ ଚିତ୍ରଟି ଦେଖାଇଲା । ଟମ୍‌ର ଅଙ୍କନ ପରିପାଟୀ ଝିଅଟିକୁ ବିମୁଗ୍ଧ କଲା । କହିଲା, "ତୁମେ ମଣିଷର ଛବି ଆଙ୍କି ପାରିବ ?" ଟମ୍ ଗୋଟିଏ ମଣିଷର ଛବି ଆଙ୍କି ଦେଲା । ମଣିଷର ଚିତ୍ର ଦେଖି ଝିଅଟି ଖୁସି ହେଲା । କହିଲା, "ଆଚ୍ଛା, ତୁମେ ମୋର ଚେହେରାଟି ଅବିକଳ ଆଙ୍କିଦେଇ ପାରିବ ?" ଟମ୍ ମନପ୍ରାଣ ଲଗାଇ ତାହାର ଚେହେରା ଆଙ୍କିଲା । ନିଜ ଚେହେରାର ଛବି ଦେଖି ଝିଅଟିର ଆନନ୍ଦ କଥା କହିଲେ ନ ସରେ । କହିଲା, "ମୁଁ ତୁମଭଳି ଚିତ୍ରାଙ୍କନ କରି ପାରନ୍ତି କି !"



ଟମ୍ କହିଲା, "ମୁଁ ତୁମକୁ ଚିତ୍ରାଙ୍କନର କୌଶଳ ଶିଖାଇ ଦେବି ।" ଝିଅଟି ଚୁପ୍ ଚୁପ୍ ପଚାରିଲା, "କେତେବେଳେ ?"

"ସ୍କୁଲ୍ ଛୁଟି ହେଲେ ।"

ଟମ୍ ପଚାରିଲା, "ତୁମ ନାମ କ'ଣ ?"

"ବେକି ଥେଚର୍ । ଆଉ ତୁମ ନାମ ? ହଁ ଏବେ ମନେପଡ଼ିଲା । ତୁମ ନାମ ହେଉଛି, ଥୋମାସ୍ ସୟାର୍ । ନୁହେଁ ?"

"ସେ'ଟା ମୋର ସ୍କୁଲର ନାମ । ମାତ୍ର ମୋର ପ୍ରକୃତ ନାମ ହେଉଛି, ଟମ୍ ।"

"ସେଇ ନାମଟା କିନ୍ତୁ ବଢ଼ିଆ ଶୁଣାଯାଉଛି ।"

ଠିକ୍ ଏହି ସମୟରେ ମିଃ ଡବନ୍ସ ଆସି ଟମ୍‌ର କାନ ଧରି ଛିଡ଼ା କରାଇଲେ । ଏହାପରେ କୋଠରିର ଅନ୍ୟ ପାଖରେ ଥିବା ତାହାର ନିଜର ଡେସ୍କ ପାଖକୁ ତାକୁ ନେଇଗଲେ । ପୁନଶ୍ଚ କ୍ଲାସ୍‌ର ପିଲାଯାକ ହସିବାରେ ଲାଗିଲେ । ଟମ୍‌ର କାନ ଜଳୁଥାଏ । ତଥାପି ତା'ର ଦୁଃଖ ନ ଥାଏ ।

## ମଶାଣି ଭୂଇଁରେ କଣ ଘଟିଲା

ଅର୍ଦ୍ଧରାତ୍ର । ଟମ୍ ବିଛଣାରେ ପଡ଼ିଥାଏ । ମାତ୍ର ଆଖିକୁ ନିଦ ଆସି ନ ଥାଏ । ଅର୍ଦ୍ଧଜାଗ୍ରତ ଏବଂ ଅର୍ଦ୍ଧସୁପ୍ତ ଅବସ୍ଥାରେ ସେ ପଡ଼ିଥାଏ ବିଛଣାରେ । ବହୁତ ଦୂରରେ କୁକୁରଟିଏ ଭୁକୁଥାଏ । ସେ ଶବ୍ଦ ତାହାର କାନରେ ବାଜିଲା । କିଛି ସମୟ ପରେ ବିରାଡ଼ିଟିଏ ମ୍ୟାଉଁ-ମ୍ୟାଉଁ ହେଉଥିବାର ଶୁଣିଲା । ଏହା ସ୍ୱପ୍ନ ନା ସତ୍ୟ ? "ମ୍ୟାଉଁ-ମ୍ୟାଉଁ !" ଏହା ସ୍ୱପ୍ନ ନୁହେଁ । ଏୟେ ହେଉଛି ଡାକ । ତା ଡାକରର ଇସାରା ପାଇଲା ଟମ୍ । ତାକୁ ଅପେକ୍ଷା କରି ଡାକ୍

ସେଠାରେ ଛୁଆଁ ହୋଇଥାଏ । ସେମାନେ ମଶାଣିଭୂଇଁକୁ ଯିବେ ବୋଲି ମନେ ମନେ ଯୋଜନା କରିଥାନ୍ତି ।

ଖୁବ୍ ତରତର ହୋଇ ନୀରବ ନିଶ୍ଚଳଭାବରେ ଟମ୍ ପୋଷାକ ପିନ୍ଧିଲା । ଝରକା ବାଟେ ବାହାରିଯିବ ବୋଲି ଉପରକୁ ଉଠିଲା । ପାଦ ଚପି ଚପି ଛାତ ଉପରେ ଚାଲିଥାଏ ଧୀରେ ଧୀରେ । ମଝିରେ ମଝିରେ 'ମ୍ୟାଉଁ-ମ୍ୟାଉଁ' ଶବ୍ଦ କରି ଦେଉଥାଏ । ଶେଷରେ ଡିଆଁମାରି ତଳେ ପହଞ୍ଚିଲା । ଆଉକିଛି ଅଡୁଆ ନ ଥାଏ । ଟମ୍ ଏବଂ ହାକ୍ ସାଙ୍ଗ ହୋଇ ଚାଲିଲେ ମଶାଣିଭୂଇଁକୁ ।

ଗାଁଠାରୁ ମଶାଣିଭୂଇଁ ଅଧଘଣ୍ଟାକର ବାଟ । ପାହାଡ଼ ଉପରେ ଥିବା କୌଣସି ଏକ ନିର୍ଜନ ସ୍ଥାନରେ ମଶାଣିର ଅବସ୍ଥିତି । ପୁରୁଣା ଭଙ୍ଗାରୁଜା ବାଡ଼ଟିଏ ତାହାର ଚାରିପଟେ ଘେରି ରହିଥାଏ । କେଉଁ ପୁରୁଣା ଯୁଗର ମଶାଣି ଭୂଇଁ ।

ଛାତ ଉପରେ ଅସୁମାରି କାଠପଟାର ଛକଚିହ୍ନ ଧରି କେଉଁ-କାଳରୁ ଯେ ସେ ତାହାର କାମ କରି ଆସୁଛି ସେକଥା କେହି ଜାଣେନି । ବହୁ ପୁରାତନ ହେତୁ କାଠପଟାର ଛକଗୁଡ଼ିକ କେଉଁଠି କେମିତି ଭାଙ୍ଗି ଯାଇଥାଏ । ସେଗୁଡ଼ିକ ଉପରେ ଘାସ ମାଡ଼ି ଯାଇଥାଏ । ପରିଷ୍କାର ଭାବରେ ଦେଖାଯାଉ ନ ଥାଏ । ପିଲା ଦୁଇଜଣ ସେଠାରେ ପହଞ୍ଚିବାବେଳକୁ ସିରି ସିରି ହୋଇ ପବନ ବହୁଥାଏ । ଜଣାପଡୁଥାଏ, ସତେ ଯେମିତି ପବନର ସେଇ ସାଇଁ ସାଇଁ ଶବ୍ଦ ଭିତରେ କେତେ ଦୁଃଖ, କେତେ କାରୁଣ୍ୟ ପୂରି ରହିଛି । ଟମ୍‌ର ମନରେ ଭୟଜାତ ହେଲା । ମଶାଣିଭୂଇଁ ଭୂତମାନଙ୍କର ଆଉ୍ଡାସ୍ଥଳୀ ବୋଲି ସେ ଆଗରୁ ଶୁଣିଥିଲା । ସେଇ ଭୟ ତାକୁ ଅସ୍ଥିର କରି ପକାଇଲା । ହାକଲ୍‌ବେରି ଫିନ୍‌ର ମନରେ ମଧ୍ୟ ଅନୁରୂପ ଆତଙ୍କ ଜାତ ହେଲା ।

ସେଇ ଅଳନ୍ଧୁ ଅନ୍ଧାର ଭିତରେ ଭିତରେ ପିଲା ଦୁହେଁ ଅଗ୍ରସର ହେଲେ ହର୍ସ ଉଇଲୟମ୍‌ଙ୍କ ସମାଧି ପାଖକୁ । ସେମାନେ ଅପେକ୍ଷା କରି ସେଠାରେ ଛିଡ଼ା ହୋଇଥାନ୍ତି ।

ଟମ୍ କହିଲା, "ହାକ୍, ମୋତେ ଏହି ଜାଗାଟା ଆଦୌ ଭଲ ଲାଗୁ ନାହିଁ ।"

ହାକ୍ କହିଲା, "ତୁ କ'ଣ ଭାବୁଛୁ ଯେ ମୋତେ ଏହି ଜାଗା ଭଲ ଲାଗୁ ଛି ? ତୋହରି ପରି ମୋତେ ମଧ୍ୟ ଏଠାରେ ରହିବାକୁ ଇଚ୍ଛା ହେଉ ନାହିଁ ।"

"ହର୍ସ ଉଇଲୟମ୍ କ'ଣ ଆମ ଦୁହିଁଙ୍କ କଥା ଶୁଣୁଥିବେ । ତୁ କଣ ଭାବୁଛୁ ?"

"କେଜାଣି ? ସେ କଥା ମୁଁ ଜାଣିବ କପରି ? ହୁଏତ ଶୁଣୁ-ଥିବେ ।"

ଟମ୍ ହଠାତ୍ ଚାଟି କରି କହିଲା, "ହେଇଟି ଟମ୍, କଛି ଶୁଣିପାରୁଛୁ ?"

"ସେ ହେଉଛି ସେଇ ଭୂତଙ୍କର ଶବ୍ଦ ! ସେମାନେ ଏଇଆଡ଼କୁ ଆସୁଛନ୍ତି ! ଟମ୍, ଆମେ କରିବା କ'ଣ ?"

"ସେମାନେ କ'ଣ ଆମକୁ ଦେଖିପାରିବେ ?"

"ଅସମ୍ଭବ ନୁହେଁ । ବିରାଡ଼ିମାନଙ୍କ ପରି ଭୂତମାନେ ଅନ୍ଧାର ରାତିରେ ଦେଖି ପାରନ୍ତି ।"

ଟମ୍ ଧୀରେ ଧୀରେ କହିଲା, "ଚୁପ୍ ରହ । ସେମାନେ ସମ୍ଭବତଃ ଆମକୁ ଦେଖିପାରିବେ ନାହିଁ ।"

କିଛି ସମୟ ଧରି ପିଲା ଦୁଇଟି ସେଠାରେ ଛିଡ଼ା ହୋଇ ରହିଲେ ନୀରବ ନିଶ୍ଚଳ ଭାବରେ । ସେମାନଙ୍କର ଛାତି ଧଡ଼ପଡ଼ ହେଉଥାଏ ।

ଟମ୍ ଚୁପ୍ ଚୁପ୍ କହିଲା, "ସେ ଆଡ଼କୁ ଶୁହିଁ ଦେଖ ।"

"ଏମାନେ ସବୁ ଭୂତ । ଆମର ଉଦ୍ଦେଶ୍ୟରେ ଏ ଆଡ଼କୁ ମାଡ଼ି ଆସୁଛନ୍ତି । ସେମାନେ ସବୁ ହାତରେ ନିଆଁହୁଳା ଧରି ଆସୁଛନ୍ତି ! ଟମ୍, ଆମେ କି ଜାଗାରେ ଆସି ପହଞ୍ଚିଲେ !"

"ଚୁପ୍, ଚୁପ୍ । କଥା କହ ନାହିଁ ।"

ସେହିଠାରେ ଦୁହେଁଯାକ ଦୁଇଟି ପାଷାଣ ପ୍ରତିମା ପରି ଛିଡ଼ା ହୋଇଥାନ୍ତି । ଦେଖିଲେ, ତିନୋଟି ମୂର୍ତ୍ତି ଧୀରେ ଧୀରେ ସେମାନଙ୍କ ଆଡ଼କୁ ଆଗେଇବାରେ ଲାଗିଛନ୍ତି । ଜଣକ ହାତରେ ବତିଟିଏ ଥାଏ ।

"ଟମ୍, ସେମାନେ ଏଇଆଡ଼କୁ ଆସୁଛନ୍ତି । ସମ୍ଭବତଃ ସେମାନେ ଆମ୍ଭମାନଙ୍କୁ ଦେଖି ସାରିଲେଣି । ମୋତେ ଜଣାପଡ଼ୁଛି, ସେମାନେ ଆମ୍ଭମାନଙ୍କୁ ଜୀଅନ୍ତା ଖାଇଦେବେ ।"

"ଚୁପ୍ ରହ !"

ମୂର୍ତ୍ତି ତିନୋଟି ନିକଟତର ହେଲେ ।

ହାକ୍ ଧୀରେ ଧୀରେ କହିଲା, "ଟମ୍, ସେମାନେ ଭୂତ ନୁହନ୍ତି । ସେମାନେ ସବୁ ମଣିଷ । ସ୍ୱରରୁ ଜଣାପଡ଼ୁଛି ସେ ହେଉଛି ମାଫ୍ ପୋଟର୍ । ତାଙ୍କ ସାଙ୍ଗରେ ଅଛି ରେଡ଼୍ ସୁ !"

"ଚୁପ୍ ରହ !"

ତିନିଜଣଯାକ ଲୋକ ହର୍ସ ଉଇଲିୟମ୍‌ଙ୍କ ସମାଧି ନିକଟରେ ପହଞ୍ଚିଲେ । ପିଲାଦୁଇଟି କେତେଗୁଡ଼ିଏ ଗଛର ଆଡୁଆଳରେ ଛକି ବସିଥାନ୍ତି । ସେହି ଲୋକମାନଙ୍କଠାରୁ ସେମାନେ ବେଶୀ ଦୂରରେ ନ ଥାନ୍ତି । କେତେ ହାତର ବ୍ୟବଧାନ ମାତ୍ର । ସେମାନଙ୍କ ପାଖରେ ଗ୍ଲେଟ ଗାଡ଼ିଟିଏ ଥାଏ । ବତି ଆଲୁଅରେ ପିଲାମାନେ ତୃତୀୟ ଲୋକ ଜଣକର ମୁହଁ ଦେଖିପାରିଲେ । ସେ ହେଉଛନ୍ତି ଡାକ୍ତର ରବିନ୍‌ସନ୍ ।



ଯୁବକ । ଦେଖିବାକୁ ସୁନ୍ଦର । ସେ କହିଲେ, "ସମାଧି ଚୋର ଏଇଠାରେ । ହାତ ଚଞ୍ଚଳ କର । ଜହ୍ନ ଉଇଁବା ଆଗରୁ ତୁମ୍ଭ-ମାନଙ୍କର କାମ ଯେପରି ଶେଷ ହୁଏ !

ଅନ୍ୟ ଦୁଇଜଣ ମାଟି ତାଡ଼ିବା ଆରମ୍ଭ କରିଦେଲେ । କିଛି ସମୟ ପରେ ମାଟିତଳୁ ଟିଣବାକ୍ସଟିକୁ ବାହାର କରି ଆଣିଲେ ଏବଂ ଗାଡ଼ି ଭିତରେ ଶୁଆଇ ରଖି ତାହାକୁ ଘୋଡ଼ାଇ ଦେଲେ ।

ଡାକ୍ତରଙ୍କୁ ମାଫ୍ ପୋଟର୍ କହିଲା, "ଡାକ୍ତରବାବୁ, ଏବେ ଆମ୍ଭମାନଙ୍କର କାମ ଶେଷ ହୋଇଛି । ଏ କାମ ପାଇଁ ଆପଣଙ୍କୁ ଆଉ ପାଞ୍ଚଡଲାର ଦେବାକୁ ପଡ଼ିବ । ସେତକ ଦେବାକୁ ରାଜି ନ ହେଲେ ଆମେ ଶବଟି ଏଇଠାରେ ଛାଡ଼ି ଚାଲିଯିବା ।"

ଡାକ୍ତର କହିଲେ, "ତୁମ୍ଭମାନଙ୍କର ପ୍ରାପ୍ୟ ମୁଁ ଆଗରୁ ଦେଇ ସାରିଛି ।"

ରେଡ୍ ଯୁ କହିଲା, "ବର୍ତ୍ତମାନ ଆପଣଙ୍କୁ ଆଉ ପାଞ୍ଚଡଲାର ଅଧିକ ଦେବାକୁ ପଡ଼ିବ ।" ଡାକ୍ତର କହିଲେ, "ଏଇ କାମପାଇଁ ମୁଁ ତୁମକୁ ଯଥେଷ୍ଟ ଅଧିକ ଅର୍ଥ ଦେଇ ସାରିଛି । ଏଥିପାଇଁ ଆଉ ଗୋଟିଏ ସେଣ୍ଟ୍ ସୁଦ୍ଧା ଅଧିକ ଦେଇପାରିବି ନାହିଁ ।"

ରେଡ୍ ଯୁ କହିଲା, "ଶୁଣନ୍ତୁ ! ଆଉ ପାଞ୍ଚଟା ଡଲାର ଦେବା ପାଇଁ ବେରାଜି ହୁଅନ୍ତୁ ନାହିଁ । ତାହା ନ ହେଲେ ପଛରେ ପସ୍ତାଇବାକୁ ପଡ଼ିବ ! ମୁଁ ଆପଣଙ୍କୁ ଜାଣିଛି । ଆପଣଙ୍କ ବାପାଙ୍କୁ ବି ଭଲ ରୂପେ ଜାଣି ରଖିଛି । ମୋତେ ଚୋର ବୋଲି କହି ଥରେ ସେ ମୋତେ କଏଦଖାନାରେ ପୂରାଇଥିଲେ । ମୁଁ କଣ ସେକଥା ଭୁଲି ଯାଇଛି ବୋଲି ଭାବୁଛନ୍ତି ? ନା, ସେକଥା ମୁଁ ଏ ଜୀବନରେ କେବେହେଲେ ଭୁଲିପାରିବି ନାହିଁ । ଛାଡ଼ନ୍ତୁ ସେ କଥା । ବର୍ତ୍ତମାନ... ସେଇ ପାଞ୍ଚଟା ଡଲାର୍ !"

ରେଡ୍ ଯୁର କଥା ଶୁଣି ଡାକ୍ତର ହଁ ଚୁଁ କିଛି କହିଲେ ନାହିଁ । ଗୋଟିଏ ଧକ୍କାରେ ତାକୁ ତଳେ ପକାଇଦେଲେ । ସାଙ୍ଗର ଦୁରବସ୍ଥା ଦେଖି ପୋଟର୍ ଡାକ୍ତରଙ୍କ ଆଡ଼କୁ ଦୌଡ଼ି ଆସିଲା ।

ଘୃହଁ ଘୃହଁ ଦୁହିଁଙ୍କ ଭିତରେ ଖୁବ୍ ଜୋର୍‌ରେ ଲଢ଼େଇ ଲାଗିଗଲା । ଲଢ଼େଇ ଭିତରେ ପୋଟର୍‌ର ପେଟରେ ଲାଗିଥିବା ଛୁରୀଟି ତଳେ ଖସି ପଡ଼ିଲା । ତଳୁ ଉଠିପଡ଼ି ରେଡ଼୍ ସୁ ଛୁରୀଟିକୁ ଉଠାଇନେଲା । ସୁଯୋଗ ଉଣ୍ଡି ବସିଥାଏ । ଇତ୍ୟବସରରେ ଡାକ୍ତର ସମାଧି ଉପରୁ ଗୋଟିଏ କାଠପଟା ଉଠାଇ ଆଣି ପୋଟର୍‌କୁ ଖୁବ୍ ଜୋର୍‌ରେ ଆଘାତ କଲେ । ସେଇ ଆଘାତରେ ପୋଟର୍ ତଳେ କଗୃଡ଼ ହୋଇପଡ଼ିଲା । ଏହି ସମୟରେ ରେଡ଼୍ ସୁ ଦୌଡ଼ି ଆସି ଡାକ୍ତରଙ୍କ ବକ୍ଷ ସ୍ଥଳରେ ଏପରି ଜୋର୍‌ରେ ଛୁରୀ ଭୁଷିଦେଲା ଯେ ସଙ୍ଗେ ସଙ୍ଗେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା ।

ସେତେବେଳକୁ ଚନ୍ଦ୍ର ପୂର୍ବ ଦିଗ୍‌ବଳୟର ମଥାନ କାଟି ଉଠି ଆସିଥିଲେ ଆକାଶ ଉପରକୁ । ପିଲା ଦୁଇଟି ଲଢ଼େଇର ବର୍ଣ୍ଣିକା ସାକ ଦେଖିପାରୁଥିଲେ ପରିଷ୍କାର ଭାବରେ । ନିମିଷକ ମଧ୍ୟରେ ଧୂସର ମେଘଖଣ୍ଡ ଚନ୍ଦ୍ରଙ୍କୁ ଘୋଡ଼ାଇଦେଲା । ସବୁଆଡ଼ ଅନ୍ଧକାର ଘୋଟିଗଲା । ସେଇ ସୁଯୋଗ ଭିତରେ ପିଲା ଦୁଇଟି ଲୁଚିବା ଜାଗା ଛାଡ଼ି ପଳାଇଗଲେ ଦୂରକୁ । ମେଘଖଣ୍ଡର ଧୂସର ଆବରଣ ଟେକି ପଦାକୁ ମୁହଁ ଦେଖାଇଲେ ଜହ୍ନମାମୁଁ । ଦୁଇଟି ଭୂପତିତ ଶରୀରର ମଧ୍ୟସ୍ଥଳରେ ଛିଡ଼ା ହୋଇଥାଏ ରେଡ଼୍ ସୁ ।

ତଳକୁ ଝୁଙ୍କିପଡ଼ି ସେ ଡାକ୍ତରଙ୍କ ପକେଟ୍ ଭିତରୁ କିଛି ଟଙ୍କା ବାହାର କରି ନେଲା । ଛୁରୀଟି ନେଇ ପୋଟରର ଡାହାଣ ହାତରେ ଧରାଇ ଦେଲା । କିଛି ସମୟ ପରେ ପୋଟର ଭିଡ଼ିମୋଡ଼ି ହେଲା । ତା ପରେ ଖୁବ୍ ଜୋର୍‌ରେ ଚିତ୍କାର କରି ସେ ଉଠି ବସିଲା । ଚାରିପାଖ ଚାହିଁଲା । ଡାକ୍ତରଙ୍କର ରକ୍ତାକ୍ତ ଶରୀର ତାହାର ଆଖିରେ ପଡ଼ିଲା । ଏଣେ ଦେଖିଲାବେଳକୁ ନିଜ ହାତମୁଠାରେ ଛୁରୀ । ଏକ ଅଜଣା ଆତଙ୍କରେ ତାହାର ସର୍ବାଙ୍ଗ ଶିହରି ଉଠିଲା । ସଙ୍ଗେ ସଙ୍ଗେ

ହୁଙ୍କି ପକାଇଦେଇ ପଚାରିଲା, "ରେଡ଼୍ ଯୁ, ସ୍ପେ ମୁଁ କ'ଣ କରିଛି ?"

"ତୁମେ ଡାକ୍ତରଙ୍କୁ ମାରି ଦେଇଛ, ମାଫ୍ !"

"ମୁଁ ତାଙ୍କୁ ମାରିଦେଲି ? କିନ୍ତୁ··· !"

ହଠାତ୍ ମାଫର ମୁଣ୍ଡ ବିନ୍ଧିବାରେ ଲାଗିଲା । ନିଜ ହାତଲଗାଇ ସେ ବିନ୍ଧିଲା ମୁଣ୍ଡଟାକୁ ଘଷୁଥାଏ ।

"କାହିଁ ? ମୋର ତ କିଛି ମନେପଡ଼ୁ ନାହିଁ ।"

"ସେଇ ପାଞ୍ଚଟା ଡଲାର୍ ବିଷୟରେ ଆମ୍ଭେମାନେ କଥାବାର୍ତ୍ତା ହେଉଥିଲୁଁ । ତା'ପରେ ହେଲା ଲଢ଼େଇ । ହଁ, ସେଇ ସେତିକ କଥା ମୋର ମନେ ପଡ଼ୁଛି··· । ତା'ପରେ···"

"ତା'ପରେ ସେ ଗୋଟିଏ କାଠପଟା ଧରି ତୁମକୁ ଖୁବ୍ ଜୋର୍‌ରେ ଆଘାତ କଲେ ଏବଂ ତୁମେ ରାଗ ଜର୍ଜରିତ ହୋଇ ତାଙ୍କୁ ଛୁରୀ ଭୁଷିଦେଲ । ତାଙ୍କ ଆଘାତରେ ତୁମେ ତଳେ କଚାଡ଼ି ପଡ଼ିଲ ସତ, ମାତ୍ର ତୁମର ଛୁରୀକାଘାତରେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।"

ପୋଟର୍ କହିଲା, "ତାହା ହୋଇଥାଇପାରେ । ମୁଁ ମଦ ନିଶାରେ ବିବେକଶୂନ୍ୟ ହୋଇ ପଡ଼ିଛି । ନିଶା ଝୁଙ୍କ୍‌ରେ କଣ ଯେ କରି ଯାଇଛି ସେ କଥା ମୁଁ କିଛି ଜାଣିପାରୁ ନାହିଁ । ଯାହାହେବାର ହୋଇଯାଇଛି । ତୁମେ ଯେପରି ଏ କଥା ଅନ୍ୟତ ନ କୁହ, ଏତିକି ମୋର ଏକାନ୍ତ ଅନୁରୋଧ । ତୁମ ଗୋଡ଼ ଧରୁଛି, ଯୁ । ଏ କଥା ଅନ୍ୟ କେଉଁଠି ନ କହିବ ବୋଲି ମୋ ଆଗରେ ଶପଥ କର ।"

ସେ କଥା ଅନ୍ୟ କାହାଠାରେ ନ କହିବ ବୋଲି ରେଡ଼୍ ଯୁ ଶପଥ କଲା ।

ଗୋଟିଏ ଅବୋଧ ଶିଶୁ ପରି ମାଫ୍ ପୋଟର୍ କାନ୍ଦିବାକୁ ଲାଗିଲା । ଏହା ଦେଖି ରେଡ୍ ଯୁ ବିରକ୍ତ ହେଲା । କହିଲା, "ହେଉ ବନ୍ଦ କର । ଆସ, ଏ ସ୍ଥାନ ଛାଡ଼ି ଶୀଘ୍ର ପଳାଇଯିବା । ତୁମେ ସେଇ ରାସ୍ତାରେ ଯାଅ । ମୁଁ ଏଇ ରାସ୍ତାରେ ଯାଉଛି ।

ଦୁହେଁଯାକ ମଶାଣିଭୂଇଁ ଛାଡ଼ି ପଳାଇଗଲେ । ପୋଟର୍‌ର ଛୁରୀଟା ଡାକ୍ତରଙ୍କ ପାଖରେ ପଡ଼ି ରହିଥାଏ !

## ଟମ ଓ ହାକ୍ ଅତ୍ୟନ୍ତ ସଂନ୍ତ୍ରସ୍ତ ହୋଇପଡ଼ିଲେ

ଟମ୍ ଏବଂ ହାକ୍ ଜୀବନମୂର୍ଚ୍ଛା ଦୌଡ଼ିଲେ ଗାଁକୁ । ଭୟରେ ଉଭୟଙ୍କର ଛାତି ଧଡ଼ପଡ଼ ହେବାରେ ଲାଗିଥାଏ । ଛନିଆ ହୋଇ ଦୁହେଁଯାକ ଗୋଟିଏ ପୁରୁଣା ଶସ୍ୟଭଣ୍ଡାର ଭିତରକୁ ପଶିଗଲେ । ଦରଜାରେ କିଳଣୀ ଦେଇ ଉଭୟେ ଗୋଡ଼-ହାତ ମେଲାଇ ଚଟାଣ ଉପରେ ଶୋଇଗଲେ । ଖୁବ୍ ଜୋର୍‌ରେ ନିଃଶ୍ୱାସ ମାରୁଥାନ୍ତି । ଏମିତି କିଛି ସମୟ ଗଡ଼ିଗଲା । ଟିକେ ଆଶ୍ୱସ୍ତି ଲାଭ କଲା ପରେ ଟମ୍ କହିଲା, "ହାକ୍, ବର୍ତ୍ତମାନ ବି ମୋ ଆଖିଆଗରେ ସେଇ ଭୟାନକ ଦୃଶ୍ୟ ନାଚି ଯାଉଛି ! ବିଚରା ଡାକ୍ତର କି ଶୋଚନୀୟ-ଭାବରେ ମୃତ୍ୟୁବରଣ କଲେ !"

"ଅବଶ୍ୟ ସେଥିପାଇଁ ହତ୍ୟାକାରୀକୁ ଫାଶୀଦଣ୍ଡ ଭୋଗିବାକୁ ପଡ଼ିବ ।"

"ହାକ୍, ଆଖିରେ ଦେଖି ଆସିଥିବା କଥା କହିଦେବା କି ?"

"କହିଦେବୁ ! କି ? ତୋ ମୁଣ୍ଡ ଖରାପ ହେଲାଣି କି ? ସେକଥା କହିଦେଲେ ରେଡ୍ ଯୁ କଣ ଆମ ଦୁହିଁଙ୍କୁ ନ ମାରି ଛାଡ଼ିଦେବ ?"

"ତୋର ଅନୁମାନ ମିଥ୍ୟା ନୁହେଁ ।"

ହାକ୍ କହିଲା, "ମାଫ୍ ପୋଟର୍ କଣ କହୁଛି କହ ।"

"ତୋ କଥା ଅକ୍ଷରେ ଅକ୍ଷରେ ଠିକ୍ । ମାଫ୍ପୋଟର୍‌ର କଥା ଶୁଣାଯାଉ । ଆମେ କିଛି କହିବା ନାହିଁ । ହାକ୍, ଚାଲ ଶପଥନେବା ଯେ ଆମେ ଏ କଥା କେବେ କାହାର ଆଗରେ କହିବା ନାହିଁ ।"

"ଆମେ ଏକ କଥା ଲେଖି ନିଜ ନିଜର ରକ୍ତରେ ଦସ୍ତଖତ କରିଦେବା ।"

ପ୍ରସ୍ତାବ ଅନୁଯାୟୀ ସେମାନେ ଖଣ୍ଡିଏ କାଠ ଉପରେ ଶପଥଟି ଲେଖି ତାହା ତଳକୁ ନିଜ ନିଜର ନାମ ଦସ୍ତଖତ କରିଦେଲେ ରକ୍ତରେ । ଏହାପରେ ସେମାନେ ଗୋଟିଏ ଗାତ ଭିତରେ କାଠଟି ରଖି ମାଟି ଘୋଡ଼ାଇ ଦେଲେ ।

ସହସା ଗୋଟିଏ କୁକୁରର ଆର୍ତ୍ତଚିତ୍କାର ସେମାନଙ୍କର କର୍ଣ୍ଣ-ଗୋଚର ହେଲା । ହାକ୍ କହିଲା, "ଶୁଣୁଛ ଟମ୍! ଏଇ ଚିତ୍କାରରୁ କ'ଣ ସୂଚନା ମିଳୁଛି ତୁ କ'ଣ କିଛି ଜାଣିପାରୁ ନାହୁଁ ? ଏଥିରୁ ଜଣାପଡ଼ୁଛି ଯେ ଅଳ୍ପ ସମୟ ପରେ ଜଣେ କାହାର ମୃତ୍ୟୁ ହେବ ।"

ଟମ୍ ପଚାରିଲା, "ତୁ କ'ଣ ମାଫ୍ ପୋଟର୍‌କୁ ଲକ୍ଷ୍ୟ କରି ଏ କଥା କହୁଛୁ ?" ହାକ୍ ନିରୁତ୍ତର ରହିଲା ।

ପିଲା ଦୁହେଁ ଶସ୍ୟ ଭଣ୍ଡାରରୁ ବାହାରି ଆସିଲେ । ଯେଉଁଆଡ଼େ କୁକୁରଟା ଚିତ୍କାର କରୁଥିଲା ସେହିଆଡ଼କୁ ଅଗ୍ରସର ହେବାରେ ଲାଗିଲେ । ଦୂରରେ ଥାଇ ଦେଖିଲେ ଜଣେ କେହି ଲୋକ ନିଦରେ ଶୋଇ ପଡ଼ିଛି । ଆଉ କୁକୁରଟା ତାହାରି ପାଖରେ ଛିଡ଼ା ହୋଇ ଚିତ୍କାର କରିବାରେ ଲାଗିଛି । ସେମାନେ ନିକଟବର୍ତ୍ତୀ ହେଲେ । ଦେଖିଲେ, ସେଇ ଲୋକଜଣକ ହେଉଛି ମାଫ୍ ପୋଟର୍ । ପିଲା-ମାନଙ୍କୁ ଦେଖି କୁକୁରଟା ପଳାଇଗଲା ନାହିଁ । ପୂର୍ବପରି ଚିତ୍କାର

କରିବାରେ ଲାଗିଥାଏ । ହାକ୍ କହିଲା, "ବୁଝିଲୁ ଟମ୍, ଘଡ଼ିକ ଆଗରୁ ତୁ ଯାହା ଅନୁମାନ କରୁଥିଲୁ ତାହା ମିଛ ନୁହେଁ । ଦେଖିବୁ, ମାଫ୍ ଖୁବ୍ ଶୀଘ୍ର ମରିଯିବ ।"

ଟମ୍ ଘରକୁ ଦୌଡ଼ିଲା । ଉପରକୁ ଚଢ଼ି ଝରକାବାଟେ ତାହାର ଶୋଇବା କୋଠରି ଭିତରକୁ ଗଲା । ଭାବୁଥାଏ, ସିଦ୍ ନିଶ୍ଚିନ୍ତରେ ଶୋଇ ପଡ଼ିଛି । କିନ୍ତୁ ସିଦ୍ ଆଖିକୁ ନିଦ ଆସି ନ ଥିଲା । ଟମ୍‌ର କୋଠରି ଭିତରକୁ ଆସିବା କଥା ସେ ପୋଲି ମାଉସୀଙ୍କୁ କହି-ଦେଲା ।

ଟମ୍‌କୁ ଦେଖି ପୋଲି ମାଉସୀ କିଛି ପଚାରିଲେ ନାହିଁ । ଖାଲି ମନ ଦୁଃଖରେ କହିଲେ, "ଟମ୍, ତୋ ପାଇଁ ମୁଁ ଆଉ କ'ଣ କରିବି କିଛି ଭାବିପାରୁ ନାହିଁ । ଦିନକୁଦିନ ତୁ ଅଧିକରୁ ଅଧିକ ଖରାପ ହୋଇ ଯାଉଛୁ !"

ଟମ୍ ସ୍କୁଲକୁ ଗଲା । 'ଶିବଲିଙ୍ଗରେ ବେଲପତ୍ର ଲାଗିବାରେ ଭୁଲ ହୋଇପାରେ'—ମାତ୍ର ଶିକ୍ଷକଙ୍କଠାରୁ ଟମ୍‌ର ଗାଳି ଶୁଣିବାରେ କେବେହେଲେ ବ୍ୟତିକ୍ରମ ହୁଏ ନାହିଁ । ନିତିଦିନ ପରି ସେଦିନ ବି ତାକୁ ଗୁଡ଼ାଏ ଗାଳି ଶୁଣିବାକୁ ପଡ଼ିଲା । ନିଜ କଥା ଭାବି ଟମ୍ ଅତ୍ୟନ୍ତ ବିମର୍ଷ ହେଲା । ସମସ୍ତେ ଯେପରି ଆଜି ତା ବିରୁଦ୍ଧରେ ମୁଣ୍ଡ ଟେକିଛନ୍ତି, ତାକୁ ସେହିପରି ଜଣାଗଲା । ସେ ମିଃ ଡବିନ୍‌ସଙ୍କର ଚକ୍ଷୁଶୂଳ ହୋଇଛି । ପୋଲି ମାଉସୀଙ୍କର ଦୁଃଖର କାରଣ ହୋଇଛି । ହୁଏତ ରେଭ୍ଡ଼୍ ମଧ୍ୟ ତା ବିରୁଦ୍ଧରେ ଚକ୍ରାନ୍ତ କରୁ-ଥାଇପାରେ । ବେକି କଥା ମନେ ପଡ଼ିବାରୁ ତାକୁ ସବୁଠାରୁ ବେଶୀ ଖରାପ ଲାଗିଲା । ସେ ଟମ୍ ସହିତ ପାଟି ଫିଟାଉ ନ ଥାଏ । ଟମ୍ ଯେ ଆମି ଲରେନ୍‌ସକୁ ତାହାଠାରୁ ବେଶୀ ଭଲ ପାଏ, ଏହିପରି ଏକ ଭୁଲ ଧାରଣା ବେକି ମୁଣ୍ଡରେ ପଶି ଥାଏ । ଏତେଗୁଡ଼ାଏ

ଦୁର୍ଭାବନା ଭିତରେ ଥାଇ ଟମ୍‌କୁ ଲାଗୁଥାଏ ସତେ ଯେପରି ତା'ର ଛାତି ଫାଟିଯିବ !

## ମାଫ୍ ପୋଟର୍ ଜେଲ୍ ଖଟିଲା

ତା ପରଦିନ ରାତି ପାହିଲା ବେଳକୁ ମଶାଣିଭୂଇଁର ଦୁଃସମ୍ବାଦ ଗ୍ରାମଅଞ୍ଚଳ ଖେଳିଗଲା । ସମସ୍ତଙ୍କ ମୁହଁରେ ସେଇ ଗୋଟିଏ କଥା — "ଏ କାର୍ଯ୍ୟ ମାଫ୍ ପୋଟର୍ ଭିନ୍ନ ଅନ୍ୟ କେହି କରି ନାହିଁ । ଚଣ୍ଡାଳ, ଟାମ ଲୁଚୁଛି ଚାଲିଲା କାହିଁ ? ତରବରରେ ଛୁରୀଟା ଛାଡ଼ି ଆସିଲା । ଆଉ ମେଡିକ ଭୂକ ପାଇଁ ଆଜ ସବୁକଥା ପଦାରେ ପଡ଼ିଲା ।"

ଶୁଣିବା କଥା ଆଖିରେ ଦେଖିବାଲାଗି ସଭିଏଁ ଧାଇଁଲେ ହର୍ସ ଉଇଲିୟମ୍ସର କବର ଭୂଇଁକୁ । ଗୁହୁଁ ଗୁହୁଁ ଗୁଡ଼ାଏ ଲୋକ ଜମିଗଲେ । ସେହି ଦେଖଣାହାରୀ ଲୋକମାନଙ୍କ ଭିତରେ ରେଡ୍ ୟୁ ଥାଏ । ସେରିଫ ପୋଟର୍‌କୁ କବରଭୂଇଁକୁ ଡକାଇ ଆଣିଲେ । ଉପରେ ବିଚରାର ରକ୍ତ କଅଁାପାଣି ହୋଇ ଯାଇଥାଏ । ଆପାଦ-ମସ୍ତକ ଥରୁଥାଏ ଶୁଖିଲା ବରଡ଼ାପତ୍ର ପରି । ଚିତ୍କାର କରି କହୁଥାଏ, "ଏ କାମ ମୁଁ କରି ନାହିଁ ! ସେଥିପାଇଁ ଆପଣ ମୋତେ ଫାଶୀ-ଖୁଣ୍ଟରେ ଝୁଲେଇ ପାରିବେ ନାହିଁ ।" ଠିକ୍ ଏତିକବେଳେ ତାହାର ଆଖି ପଡ଼ିଲା ରେଡ୍ ୟୁ ଉପରେ । କହିଲା, "ୟୁ, ଏହିସବୁ କଥା କାହାରି ଆଗରେ କହିବୁ ନାହିଁ ବୋଲି ତୁ ପରା ଶପଥ କରିଥିଲୁ !"

ଏହାପରେ ରେଡ୍ ୟୁ, ପୋଟର୍ ଓ ଡାକ୍ତରଙ୍କର ଲଢ଼େଇ କଥା ସେରିଫ୍‌ଙ୍କ ଆଗରେ ଆମୂଳଚୂଳ ବର୍ଣ୍ଣନା କଲା । ପୋଟର୍ କିପରି ଭାବରେ ଡାକ୍ତରଙ୍କୁ ହତ୍ୟା କଲା ସେ କଥା କହିବାକୁ ସେ

ଭୁଲିଗଲା ନାହିଁ । ସେ ସବୁଯାକ କଥା ଠିକ୍ ଠିକ୍ କହୁ ନ ଥାଏ । ତଥାପି ତାହାର କଥାକୁ କେହି ଅବିଶ୍ୱାସ କଲେ ନାହିଁ । ଟମ୍ ଏବଂ ହାକ୍ ମଧ୍ୟ ସେଇ ଲୋକଗହଳ ଭିତରେ ଥାନ୍ତି । ମାତ୍ର ରେଡ୍ ଯୁଙ୍କୁ ଡର ସେମାନେ ସାମ୍ନାକୁ ଆସୁ ନ ଥାନ୍ତି । ଲୁଚି ଲୁଚି ରହିଥାନ୍ତି । ସେମାନେ ରେଡ୍ ଯୁର ସବୁକଥା ଶୁଣୁଥାନ୍ତି । କଥା ଭିତରେ ସେ ଯେ ଅନେକ ସମୟରେ ମିଛ କହୁଛି ଏହା ପରିଷ୍କାର ଭାବରେ ଜାଣୁଥିଲେ ବି ପ୍ରତିବାଦ କରିବା ପାଇଁ ସେମାନଙ୍କର ଜିଭ ଲେଉଟୁ ନ ଥାଏ ।

ସେରିଫ ପଚାରିଲେ, "ଏଇ ଛୁରି କ'ଣ ତୁମର ?"

ପୋଟର୍ କହିଲା, "ଆଜ୍ଞା, ହଁ । କିନ୍ତୁ ମୁଁ ତାଙ୍କୁ ହତ୍ୟା କରି ନାହିଁ ।"

ପ୍ରତିବାଦସତ୍ତ୍ୱେ ମାଫ୍ ପୋଟର୍କୁ ଜେଲ୍ ଖଟିବାକୁ ହେଲା । ଏହାପରେ ଅନେକ ରାତି ବିତିଗଲା । ଟମ୍ର ଆଖିକୁ ନିଦ ଆସିଲା ନାହିଁ । କେତେବେଳେ କେମିତି ଶୋଇ ପଡ଼ିଲେ ଭୟାନକ ସ୍ୱପ୍ନ ଦେଖେ । ଶୋଇ ଯାଇଥିଲେ ବି ଏଣୁତେଣୁ କ'ଣଗୁଡ଼ାଏ ବକେ । କେତେବେଳେ ଚିତ୍କାର କରି କହେ, "ରକ୍ତ ! ରକ୍ତ !" "ଚୁପ୍ ରହ, ଚୁପ୍ ରହ !" "ରେଡ୍ ଯୁ ଆସୁଛି ।" ସିଦ୍ ଯେତେ ଯାହା ଶୁଣେ ସବୁକଥା ପୋଲି ମାଉସୀଙ୍କ ଆଗରେ କହିଦିଏ । ସିଦ୍ର କଥା ଶୁଣି ପୋଲି ମାଉସୀ କହନ୍ତି, "ତାକୁ କ'ଣ କହିବି, ସେଇ ଦୁର୍ଘଟଣା ପରେ ମୁଁ ନିଜେ ମଧ୍ୟ ବହୁତ ଦୁଃସ୍ୱପ୍ନ ଦେଖୁଛି ।"

ଧୀରେ ଧୀରେ ଟମ୍ର ମନ-ପରଦାରୁ ସେଇ ଅପରାଧର ବିକଟଦୃଶ୍ୟ ଲିଭି ଲିଭି ଆସିଲା । ସମୟ ସମୟରେ ସେ ଜେଲ୍-ଖାନାକୁ ଯାଏ । ଗ୍ରେଟ ଝରକା ବାଟେ ପୋଟର୍ ସଙ୍ଗେ କଥାବାର୍ତ୍ତା ହୁଏ । ଖାଇବା ପାଇଁ ତା ହାତକୁ କିଛି ମିଠା ଜିନିଷ ବଢ଼ାଇଦିଏ ।

ଖାଇ ପାରିଲେ ତାକୁ ତମାଖୁ ହଏ । ପୋଟର୍ ପାଇଁ ତାହାର ମନରେ ଖୁବ୍ ଦୁଃଖ ହୁଏ । ତାହାଲଗି ହାକ୍ ଆଖିରୁ ମଧ ଲୁହ ଗଡ଼େ ।

## ଟମ୍ ପାଇଁ ନୂଆ ଔଷଧ

ଟମ୍ ଅସୁସ୍ଥ ହୋଇପଡ଼ିଲା । ଆଗରୁ ଯେପରି ଶୋଉଥିଲା ଆଉ ସେପରି ଶୋଇ ପାରିଲା ନାହିଁ । ଆଗରୁ ଯେପରି ଖାଉଥିଲା ଆଉ ସେପରି ଖାଇ ପାରିଲା ନାହିଁ । ସ୍କୁଲରୁ ପଳାଇଯିବାକୁ ଇଚ୍ଛା କଲା ନାହିଁ । ସାଙ୍ଗପିଲାଙ୍କ ସହିତ ମିଶି ଖେଳିବା ପାଇଁ ଆଉ ଆଗ୍ରହ ପ୍ରକାଶ କଲା ନାହିଁ । ମନ ଭିତରେ ଏକ ଅଜଣା ଯନ୍ତ୍ରଣା ଏବଂ ଦୁଃଖ ତାକୁ ବ୍ୟତିବ୍ୟସ୍ତ କରିବାରେ ଲାଗିଲା । ବେକି କଥା ଭାବି ସେ ଆହୁରି ବେଶୀ ଅସ୍ଥିରତା ଅନୁଭବ କରୁଥାଏ । କିଛିଦିନ ଧରି ବେକି ସ୍କୁଲକୁ ଆସୁ ନ ଥାଏ । ତାହାର ଦେହ ଖରାପ ଥାଏ ବୋଧହୁଏ । ତାହାର ଦେହ ବେଶୀ ଖରାପ ହେଲା ପରା ! ଟମ୍‌ର ମନକୁ ପାପ ଛୁଉଁଥାଏ ।

ଟମ୍‌ର ଅସୁସ୍ଥତା ପାଇଁ ପୋଲି ମାଉସୀ ଚିନ୍ତିତା ହୋଇ ପଡ଼ିଲେ । ତା ପାଇଁ କୌଣସି ଭଲ ଔଷଧର ବନ୍ଦୋବସ୍ତ କରିବେ ବୋଲି ସେ ମନେ ମନେ ସ୍ଥିର କଲେ ।

ବିଭିନ୍ନ ପ୍ରକାର ଔଷଧ ବିଷୟରେ ଜାଣିବା ପାଇଁ ପୋଲି ମାଉସୀଙ୍କ ମନରେ ଖୁବ୍ ଆଗ୍ରହ ଥାଏ । ଚିକିତ୍ସା ବିଜ୍ଞାନ ଉପରେ ଅନେକଗୁଡ଼ିଏ ବହି ପାଖରେ ରଖିଥାନ୍ତି । ଅଧିକାଂଶ ସମୟରେ ପଢ଼ନ୍ତି । ନିକଟରେ ବହି ପଢ଼ି ସେ ଗୋଟିଏ ନୂଆ ଧରଣର ଚିକିତ୍ସା

ପ୍ରଣାଳୀ କଥା ଜାଣିଥାନ୍ତି । ପିଲା ଅସୁସ୍ଥ ହେଲେ ସେ ପ୍ରତ୍ୟହ ଥଣ୍ଡା ପାଣିରେ ଗାଧୋଇବା ଉଚିତ । ତେଣୁ ପ୍ରତ୍ୟହ ସକାଳେ ଟମ୍‌କୁ ବାହାରେ ଛିଡ଼ା କରାଇ ସେ ତାହା ଉପରେ ଖୁବ୍ ଥଣ୍ଡା ପାଣି ଢାଳିବାରେ ଲାଗିଲେ । ତାପରେ ଗୋଟିଏ ଓଦାଲୁଗା ଘୋଡ଼ାଇ ତାକୁ ବିଛଣାରେ ଶୁଆଇ ରଖିଲେ । ମାତ୍ର ଏହି ବ୍ୟବସ୍ଥା ଦ୍ୱାରା ଟମ୍‌ର ସ୍ୱାସ୍ଥ୍ୟ ବଦଳିଲା ନାହିଁ । ତାହାର ଦେହ ଆହୁରି ବେଶୀ ଖରାପ ହେଲା । ଆଉ ଏକ ନୂଆ ଉପାୟ ପୋଲି ମାଉସୀଙ୍କ ମନକୁ ଆସିଲା । ଥଣ୍ଡା ପାଣି ପରିବର୍ତ୍ତେ ସେ କିଛି ଗରମ ପାଣି ଟମ୍ ଉପରେ ଢାଳିଲେ । ସେଥିରେ ବି କିଛି ଉପକାର ହେଲା ନାହିଁ ।

ସେହି ସମୟରେ "ଯନ୍ତ୍ରଣା-ନାଶିନୀ" ବୋଲି ଗୋଟିଏ ନୂଆ ଔଷଧ ବଜାରକୁ ଆସିଥାଏ । ଏତେ କଟୁ ଯେ ତାହା ଖାଇବା ବଡ଼ କଷ୍ଟକର । ତଥାପି ସେହି ଔଷଧ ଆଣାଇ ପୋଲି ମାଉସୀ ଟମ୍‌କୁ ପିଆଇଲେ । ପ୍ରତ୍ୟେକ ଭୋଜନ ଶେଷରେ ଟମ୍‌କୁ ତିନି ଗ୍ରାମୁଚ ଲେଖାଏଁ ଔଷଧ ପିଇବାକୁ ପଡ଼ୁଥାଏ । ଔଷଧ ପ୍ରତି ଟମ୍‌ର ଅଶ୍ରଦ୍ଧା ଜାତ ହେଲା । ମାଉସୀ ଅନ୍ୟ କୌଣସିଆଡ଼େ ବୁଲୁଥିବାର ଦେଖିଲେ ସେ ଔଷଧତକ ପାଟିରେ ନ ଢାଳି କୌଣସି ଗାତ ଭିତରେ ଅଜାଡ଼ିଦିଏ । ଦିନେକର କଥା । ଟମ୍ ଔଷଧତକ ଅଜାଡ଼ି-ଦେବାକୁ ଯାଉଛି ଏତିକିବେଳେ ଗୋଟିଏ ବିରାଡ଼ି ଉପରେ ତାହାର ନଜର ପଡ଼ିଲା । ସେ ଔଷଧତକ ନେଇ ତାହାର ପାଟିରେ ଢାଳି ଦେଲା । ଇସ୍, ବିରାଡ଼ିକୁ ଦେଖେ କିଏ ! ତାପରେ—ତାପରେ ମାରିଲା ଡିଆଁ । ଡିଆଁ ମାରିବା ପରେ ଆରମ୍ଭ ହେଲା ତାହାର ନୃତ୍ୟ । ପଛଗୋଡ଼ ନଚାଇ ସେ ଯେଉଁ ନୃତ୍ୟ କଲା ତାହା ଦେଖିଲେ ମଣିଷ ଅବାକ୍ ହେବ । ନାଚ ପରେ କୋଠରି ଭିତରେ ଲାଗିଲା ଏକ ଆଖିବୁଜା ଦୌଡ଼ । ଦୌଡ଼ିବା ରାସ୍ତାରେ ଯେତେ ଯାହା ପଡ଼ିଲା ସବୁ

ଜିନିଷ ଭାଙ୍ଗି ଚୂର୍‌ମାର୍ ହେଲା । ବିରାଡ଼ିର ନାଚ, କୁଦା ଆଉ ଦୌଡ଼ ଦେଖି ଟମ୍ ହସି ହସି ଗଡ଼ିଗଲା । ବହୁତଦିନ ଧରି ସେପରି ମନ ଖୋଲା ହସ ସେ ହସିପାରି ନ ଥିଲା । ଗଣ୍ଡଗୋଳ ଶୁଣି ପୋଲି ମାଉସୀ ଦୌଡ଼ି ଆସିଲେ ।

"କଥା କଣ ?"

ହସ ଚାପି କିଛି କହିବା ଟମ୍ ପକ୍ଷରେ ସମ୍ଭବପର ହେଲା ନାହିଁ । ଶେଷରେ ଆଙ୍ଗୁଳି ଦେଖାଇ କହିଲା, "ଦେଖ ! ସେଇ ବିରାଡ଼ିକୁ ଦେଖ !"

"ତାହାର ହୋଇଛି କଣ ? ତୁ ବୋଧହୁଏ ସେଇ ଔଷଧରୁ କିଛି ତାକୁ ପିଆଇ ଦେଇଛୁ !"

ଟମ୍ ହସି ହସି କହିଲା, "ସେକଥା ମୁଁ ଜାଣେ ନାହିଁ ।"

ପୋଲି ମାଉସୀ ଔଷଧ ଶିଶି, ଚାମୁଚ ଏବଂ ଔଷଧଖିଆ ପିଆଲାକୁ ଚାହିଁ ସବୁକଥା ଜାଣିପାରିଲେ ।

ମାଉସୀ ଖୁବ୍ ରାଗିଯିବେ ବୋଲି ଟମ୍ ଆଶଙ୍କା କରିଥିଲା । ମାତ୍ର ରାଗିବା ପରିବର୍ତ୍ତେ ସେ ଖୁବ୍ ଚିନ୍ତିତା ହେବାର ଦେଖି ସେ ବିସ୍ମିତ ହେଲା । କହିଲେ, "ଏ ଔଷଧ ବିରାଡ଼ିକୁ ଦିଆଯାଏ ନାହିଁ । ସମ୍ଭବତଃ ପିଲାମାନଙ୍କ ପାଇଁ ମଧ୍ୟ ଏହା ଭଲ କାମ କରେ ନାହିଁ । ତୁ ଆଉ ଏ ଔଷଧ ଖାଇବା ଦରକାର ନାହିଁ ।" ଏହାଶୁଣି ଟମ୍ ଖୁବ୍ ଖୁସି ହେଲା । ତାକୁ ପୂର୍ବାପେକ୍ଷା ଭଲ ଲାଗିଲା ।

ଏହାପରେ ବେକିକୁ ସ୍କୁଲରେ ଦେଖି ଟମ୍ ଆହୁରି ସୁସ୍ଥ ଏବଂ ସରସ ବୋଧ କଲା । ରୋଗରୁ ଉଠି ବେକି ଖୁବ୍ ସୁନ୍ଦର ଦେଖାଯାଉଥାଏ । ଟମ୍ ପ୍ରତି ତା ମନରୁ ରାଗ ଚାଲିଯାଇ ନ ଥାଏ । ଆମି ଲରେନ୍‌ସ କଥା ଭାବି ସେ ଈର୍ଷାରେ ଜଳି ଯାଉଥାଏ । ସେ ଟମ୍

ସହିତ ପାଟି ଫିଟାଉ ନ ଥାଏ । ତା ଆଡ଼କୁ ଗୁହଁ ନ ଥାଏ । ତଥାପି ତାକୁ ଦେଖିଲେ, ଟମ୍‌କୁ ଖୁସି ଲାଗେ ।

## ଟମ୍ ଜଳଦସ୍ୟୁ ସାଜିଲା

ଟମ୍‌ର ମନ ବିରକ୍ତ ହୋଇ ଯାଇଥାଏ । ତାହାର ବିରକ୍ତି ଜାତ ହୋଇଥାଏ ମାଉସୀଙ୍କ ଉପରେ, ଶିକ୍ଷକଙ୍କ ଉପରେ, ଆଉ ବେକି ଉପରେ । ବେକି ତାହା ସହିତ କଥା କହୁ ନ ଥାଏ । ସେ ମନେ ମନେ ଭାବିଲା, "ମୁଁ ଘରଛାଡ଼ି ପଳାଇବି ଏବଂ ଗୋଟିଏ ଜଳଦସ୍ୟୁ ହେବି । ସେଇ ବୃତ୍ତି ଧରିଲେ ମୁଁ ନିଶ୍ଚୟ ଧନୀ ହୋଇ-ଯିବି । ଧନ-ସମ୍ପଦ ବଢ଼ିଗଲେ ମୋତେ ସମସ୍ତେ ଖାତିର୍ କରିବେ । ମୋ ପ୍ରତି ସମସ୍ତଙ୍କର ଭୟ ରହିବ ।" ଦୈବାତ୍ ଯୁଦ୍ଧାରପାର ସହିତ ତାହାର ଦେଖା ହେଲା । ତା ମୁହଁଟା ବି ରାଗିଲା ରାଗିଲା ଦେଖାଯାଉଥାଏ ।

"ଯୁ, ତୁ ଏପରି ଦେଖାଯାଉଛୁ କାହିଁକି ? ତୋର କଣ ହେଲା ?"

"ଆଜି ସକାଳେ ମାଆ ମୋତେ ପୁଣି ବାଡ଼େଇଲେ । ମୁଁ କୁଆଡ଼େ ଆଗଠାରୁ ଆହୁରି ବେଶୀ ଦୁଷ୍ଟ ହୋଇଗଲଣି ବୋଲି ତାଙ୍କ ମୁଣ୍ଡକୁ ଏକ ଭୁଲ ଧାରଣା ପଶିଛି ।"

"ସେ ଏପରି ଭାବିବାର କାରଣ କ'ଣ ?"

"ସେ କହୁଛନ୍ତି ମୁଁ କୁଆଡ଼େ ଦୁଧସର ଚୋରି କରିଛି । ମୁଁ ପୁଣି କେବେହେଲେ ସେ ଜିନିଷ ଛୁଇଁ ନାହିଁ । କାରଣ ଦୁଧସର ଗୋଟିଏ ଏମିତି ଜିନିଷ ଯେ ତାହାର ନାଁ ଶୁଣିଲେ ମୋର ଉକାର ଉଠେ ।

ଯେତେ ମନାକଲେ ବ ସେ କ'ଣ ମାନୁଛନ୍ତି ? ତାଙ୍କର ଦୃଢ଼ବିଶ୍ୱାସ ଯେ ମୋ ଭିତରେ ଆଉ କେହି ସେ ଜିନିଷ ଖାଇ ନାହିଁ ।''

''ଯୁ, ଚାଲ, ଘରୁ ପଳାଇବା ।''

''ତୋ କଳ୍ପନାଟା କିଛି ମନ୍ଦ ନୁହେଁ । ସେପରି କଲେ ସେମାନେ ସମସ୍ତେ ଆମ ପାଇଁ ବ୍ୟସ୍ତବିବ୍ୟସ୍ତ ହୋଇ ପଡ଼ିବେ ।''

''ଚାଲ, ହାକ୍‌କୁ ଡାକି ଆମ ସହିତ ମିଶାଇବା ।''

ଟମ୍‌ର ପ୍ରସ୍ତାବ ଶୁଣି ହାକ୍ ଖୁସି ହୋଇଗଲା । ତିନିହେଁ ମିଶି କିଛି ଖାଦ୍ୟ ସଂଗ୍ରହ କଲେ । ରାତି ହେବାରୁ ତିନିବନ୍ଧୁ ଗୋଟିଏ ଭେଳାରେ ବସି ଭାସି ଯିବାରେ ଲାଗିଲେ ନଈ ତଳକୁ ତଳକୁ । କିଛିଦୂର ଯିବାପରେ ଭେଳାଟି ଯାଇ ଗୋଟିଏ ଦ୍ୱୀପରେ ଲାଗିଲା । ଛୋଟିଆ ଦ୍ୱୀପଟିଏ । ନାମ ଥାଏ ଜେକ୍‌ସନ୍‌ସ ଦ୍ୱୀପ । ତିନିହେଁଯାକ ଭେଳାରୁ ଓହ୍ଲାଇ ସେଠାରେ ଛାଉଣି ପକାଇଲେ । ଆଗରେ ହୁତ୍ ହୁତ୍ ହୋଇ ନିଆଁ ଜଳୁଥାଏ ଖୁବ୍ ଜୋର୍‌ରେ । ମାଛ, ମାଂସ, ରୁଟି ଧରି ତିନିବନ୍ଧୁ ମନ ଖୁସିରେ ଖାଇବାରେ ଲାଗିଥାନ୍ତି । ଗୁଡ଼ାଏ ଖାଇ ସାରିବା ପରେ ସେମାନଙ୍କର ଭୋକ ଜ୍ୱାଳା ମେଣ୍ଟିଲା । ସେମାନେ ଶାନ୍ତିରେ ନିଃଶ୍ୱାସ ମାରିଲେ ।

ଟମ୍ କହିଲା, ''ଏଇ ଜୀବନଟା କି ବଢ଼ିଆ ଲାଗୁଛି ! ଆମକୁ ସ୍କୁଲକୁ ଯିବାକୁ ହେବନି, ସବୁବେଳେ ଏତେ ସଫାସୁତୁରା ହେବାକୁ ପଡ଼ିବନି କିମ୍ବା ବଡ଼ ସକାଳେ ବିଛଣାରୁ ଉଠିବାଲାଗି ଆମକୁ କେହି ବାଧ୍ୟ କରିବନି । ବହୁତ ରାତି ହେବା ପର୍ଯ୍ୟନ୍ତ ଶୋଇନାହୁଁ ବୋଲି ଆମକୁ କେହି ଗାଳି ଦେବ ନାହିଁ । ନିଜ ନିଜର ଇଚ୍ଛାନୁସାରେ ଆମ୍ଭେମାନେ ପହଁରି ପାରିବା, ମାଛ ଧରି ପାରିବା ।''

ତା କଥାରେ ସମ୍ମତି ଜଣାଇ ଯୁ କହିଲା, ''ଯାହା କହିଲୁ ଅକ୍ଷରେ ଅକ୍ଷରେ ସତ । ସବୁ ଜୀବନଠାରୁ ଜଳଦସ୍ୟୁର ଜୀବନ

ଅଧିକ ମଜାଦାର । ଆକାଶରେ ଉଡ଼ି ବୁଲୁଥିବା ପକ୍ଷୀମାନଙ୍କ ପରି ଆମ୍ଭେମାନେ ସମ୍ପୂର୍ଣ୍ଣ ମୁକ୍ତ !"

ହାକ୍ ପଚାରିଲା, "ଆଚ୍ଛା, ଜଳଦସ୍ୟୁମାନଙ୍କୁ ଆଉ କ'ଣ କାମ କରିବାକୁ ହୁଏ ?" ତାକୁ ବୁଝାଇଦେବା ପାଇଁ ଟମ୍ କହିଲା, "ଜଳଦସ୍ୟୁମାନେ ଗୋଟିଏ ବଡ଼ ଜାହାଜରେ ବସି ସାତ ସମୁଦ୍ରରେ ଜଳଯାତ୍ରା କରୁଥାନ୍ତି । ନିଶାଣସ୍ୱରୂପ ସେମାନଙ୍କର ଜାହାଜ ଉପରେ କଳାପତାକା ଉଡୁଥାଏ । ସେ ପତାକା ଦେଖିବାମାତ୍ରେ ପ୍ରତ୍ୟେକ ଲୋକର ଛାତି ଥରେ । ରକ୍ତ କଣ୍ଠାପାଣି ହୁଏ । ଅନ୍ୟ ଜାହାଜ ଦେଖିଲେ ଜଳଦସ୍ୟୁମାନେ ସଙ୍ଗେ ସଙ୍ଗେ ଚଡ଼ାଉ କରନ୍ତି । ଜାହାଜ ଭିତରେ ଥିବା ଧନ-ରତ୍ନ ଲୁଟି ନିଅନ୍ତି । ତାପରେ ସେଇ ଲୁଣ୍ଠିତ ଧନ-ରତ୍ନ ଧରି ସେମାନେ ଏହିପରି କୌଣସି ଏକ ନିରୋଳା ଦ୍ୱୀପକୁ ଯାଆନ୍ତି । ସେଠାରେ ସେହିସବୁ ଧନ-ରତ୍ନ ମାଟିତଳେ ଲୁଚାଇ ରଖନ୍ତି । ସେହିମାନେ ହିଁ କେବଳ ଲୁଚାଇଥିବା ଜାଗା ଚିହ୍ନି ରଖିଥାନ୍ତି । ସେମାନଙ୍କ ଭିନ୍ନ ଅନ୍ୟ କେହି ସେକଥା ଜାଣି ନ ଥାଏ ।"

କଥା କହି କହି ସେମାନେ ଥକି ଗଲେ । ସମସ୍ତେ ନୀରବରେ ବସିଥାନ୍ତି । ପୋଲି ମାଉସୀଙ୍କ କଥା ଟମ୍‌ର ମନେ ପଡ଼ିଲା । ତାହାର ଆଖିକୋଣରୁ ଲୁହ ଜକେଇ ଆସିଲା । ମାଆ କଥା ମନେପଡ଼ିଲା ପୁଣି । ତାକୁ ନ ଦେଖି ସେ କାନ୍ଦୁଥିବେ କି ? ଜନ୍ମମାଟି କଥା ଭାବି ହାକ୍ ମଧ୍ୟ ବ୍ୟଥିତ ହୋଇ ଉଠିଲା । ଘଣ୍ଟାଏ ଭିତରେ ନାହିଁ ନ ଥିବା ନିଦ ମାଡ଼ି ଆସିଲା ସମସ୍ତଙ୍କ ଆଖିକୁ । ଆଖିର ଲୁହ ଶୁଖିଲା । ମନର ଦୁଃଖ ଲିଭିଲା ।

## ଗୋପନ ଯାତ୍ରା

ପରଦିନ ସକାଳେ ଉଠିବାବେଳକୁ ସେହି ପିଲାମାନଙ୍କର ବହୁତ ବିଳମ୍ବ ହୋଇ ଯାଇଥାଏ । ନଈକୂଳକୁ ଆସି ଦେଖନ୍ତି ତ ସେମାନଙ୍କର ଭେଳାଟି ତା ଜାଗାରେ ନାହିଁ । ରାତିରେ ସମ୍ଭବତଃ ସୁଅ ମୁହଁରେ ଭାସି ଯାଇଛି କାହିଁ କେତେ ଦୂରକୁ । ଅବଶ୍ୟ ସେଥିପାଇଁ ସେମାନଙ୍କର କିଛି ଅସୁବିଧା ହେଲା ନାହିଁ । ମାଛ, ମାଂସ ଏବଂ ଅଣ୍ଡା ରାନ୍ଧି ସେମାନେ ପେଟପୂରା ଜଳଖିଆ ଖାଇଲେ । ତାପରେ ବାହାରିଲେ ପହଁରିବା ଲାଗି । ସେ କାମ ସରିବା ପରେ ଦ୍ୱୀପ ଭିତରେ ଘୂରି ବୁଲିଲେ ଏଣେତେଣେ । ଦିପ୍ରହର ହେବାରୁ ସେମାନେ ପୁଣି ଖାଦ୍ୟ ପ୍ରସ୍ତୁତ କରି ଭୋଜନ ଶେଷ କଲେ । କାହାର ମୁହଁରୁ ବେଶୀ କଥା ବାହାରୁ ନ ଥାଏ । ଘରକଥା ଭାବି ପ୍ରତ୍ୟେକଙ୍କ ମନ ମଉଳି ଆସିଥାଏ । କିନ୍ତୁ କେହି କାହା ଆଗରେ ସେକଥା କହୁ ନ ଥାନ୍ତି ।

ତିନିହେଁ ଯାକ ଭୋଜନ କରୁଥାନ୍ତି । ଏଣେ ନିଜ ନିଜର ମାଆ-ମାଉସୀ ଓ ଜନ୍ମମାଟି କଥା ଭାବିବାରେ ଲାଗିଥାନ୍ତି । ସହସା ଗୋଟିଏ କିଛି ଶବ୍ଦ ସେମାନଙ୍କର କାନରେ ବାଜିଲା । କାନ ଡେରି ଶୁଣିଲେ । ଶବ୍ଦଟା ନଈଆଡୁ ଆସୁଥିବାର ଜାଣି ସମସ୍ତେ ସେହିଆଡେ଼ ଦୌଡ଼ିଲେ । ଦେଖିଲେ, ବହୁତ ଦୂରରେ ସେମାନଙ୍କର ଗାଁକୁ ଲାଗି କେତେଗୁଡ଼ିଏ ଛୋଟ ଛୋଟ ଡଙ୍ଗା ନଈରେ ଭାସିବାରେ ଲାଗିଛି ।

ଟମ୍ କହିଲା, "ସେମାନେ କାହାକୁ ଖୋଜୁଥିବା ପରି ଜଣା-ପଡୁଛି ।" ହାକ୍ କହିଲା, "ବିଲ୍ ଟର୍ନର୍ ଯେବେ ବୁଡ଼ିମଲା, ତାହାକୁ ଆବିଷ୍କାର କରିବା ପାଇଁ ସେମାନେ ଏହିପରି ଭାବରେ

ଦୁଇଦିନ ପରିଶ୍ରମ କରିଥିଲେ । ତେବେ ବର୍ତ୍ତମାନ ସେମାନେ ଖୋଜୁଛନ୍ତି କାହାକୁ ?"

ଟମ୍ କହିଲା, "ସେ କଥା ମୁଁ ଜାଣିଛି । ସେମାନେ ନିଶ୍ଚୟ ଆମ୍ଭମାନଙ୍କୁ ଖୋଜୁଛନ୍ତି । କାରଣ ଆମେ ତିନିଜଣ ବୁଡ଼ିଯାଇଛୁ ବୋଲି ସେମାନେ ସନ୍ଦେହ କରିଛନ୍ତି ।"



ଏ କଥା ଜାଣିବା ପରେ ସେମାନେ ଖୁବ୍ ଖୁସି ହେଲେ । ଅନେକଙ୍କ ମନରେ ଆତଙ୍କ ଖେଳାଇଦେଇ ପାରିଥିବାରୁ ସେମାନେ ଗର୍ବ ଅନୁଭବ କଲେ । ଟମ୍ ଭାବିଲା, "ପୋଲି ମାଉସୀ କେତେ କ'ଣ ଭାବି ଅସ୍ଥିର ହୋଇ ପଡ଼ୁଥିବେ । ବେକିର ଅବସ୍ଥା ମଧ୍ୟ ଠିକ୍ ସେହିପରି ହୋଇଥିବ । ହୁଏତ ସେମାନେ କେଉଁଠାରେ ବସି ତା ପାଇଁ ଅଶ୍ରୁମୋଚନ କରୁଥିବେ..."

ଅନେକ ସମୟ ଧରି ସେମାନେ ନଈକୂଳରେ ବସିଲେ । ଡଙ୍ଗାଗୁଡ଼ିକର ଗତିବିଧି ଲକ୍ଷ୍ୟ କରୁଥାନ୍ତି । ପଶ୍ଚିମ ପାହାଡ଼ ତଳେ ସୂର୍ଯ୍ୟ ମୁହଁ ଲୁଚାଇଲେ । ଚାରିପାଖରୁ ଅନ୍ଧାର ମାଡ଼ି ଆସିଲା ଧୀରେ ଧୀରେ । ଡଙ୍ଗାଗୁଡ଼ିକ ନେଇ ଲୋକମାନେ ଗାଁକୁ ଫେରିଲେ ।

ପିଲମାନେ ମଧ୍ୟ ଆସ୍ତେ ଆସ୍ତେ ସେମାନଙ୍କର ଗ୍ରୁଜଣିକୁ ବାହୁଡ଼ି ଆସିଲେ । କଚ୍ଛ ମାଛ ତରକାରି କରି ସେମାନେ ଖାଇବାକୁ ବସିଲେ । ଡଙ୍ଗାଗୁଡ଼ିକ ବନ୍ଦସ୍ଥରେ ନାନା ପ୍ରକାର କଥାବାର୍ତ୍ତା ହେଉଥାନ୍ତି । ମଝିରେ ମଝିରେ ଘରକଥା ମଧ୍ୟ ପଡ଼ୁଥାଏ ।

ଯୋ' ପଚାରିଲା, "ଏବେ ଘରକୁ ଫେରିଯିବା କି ?" ଟମ୍ ଏକୋ ଥରକେ ମନା କଲା । ହାକ୍ ମଧ୍ୟ ଯୋ'ର କଥା ସମର୍ଥନ କଲା ନାହିଁ । ମୁହଁରେ ମନା କଲେ ବି ମନ ଭିତରେ ଘରକୁ ଫେରି-ଯିବାର ଇଚ୍ଛା ପୂରି ରହିଥାଏ ସମସ୍ତଙ୍କର ।

ସନ୍ଧ୍ୟା ହେଇଗଲା । ରାତି ଆସିଲା । ଥକା ହୋଇ ଯୋ' ଏବଂ ହାକ୍ ଶୋଇ ପଡ଼ିଲେ । ଟମ୍ ତା ଜାଗାରୁ ଉଠି ଛିଡ଼ା ହେଲା । ନଈକୂଳକୁ ଗଲା । ପହଁରି ପହଁରି ନଈପାରି ହେଲା । ଗାଁରେ ପହଞ୍ଚିଲା । ତରତର ହୋଇ ଗଲା ମାଉସୀଙ୍କ ଘରକୁ । ସେଠାରେ ପହଞ୍ଚିବା-ବେଳକୁ ରାତି ୧୦ଟା ହୋଇଥାଏ । ଗୋଟିଏ ଝରକା ଉପରେ ଆଲୁଅଟିଏ ଜଳୁଥାଏ । ସେଇ ଝରକାବାଟେ ଟମ୍ ଦେଖିଲା, ତାହାର ମାଉସୀ, ସାନଭାଇ ସିଡ୍, ଭଉଣୀ ମେରି ଏବଂ ଯୋ'ହାର୍‌ପାର୍‌ର ମାଆ ଏକଜ ବସିଛନ୍ତି । କଥାବାର୍ତ୍ତା କରିବାରେ ସେମାନେ ଏପରି ମଗ୍ନ ରହିଥାନ୍ତି ଯେ ଟମ୍ ଉପରେ କାହାର ଦୃଷ୍ଟି ପଡ଼ୁ ନ ଥାଏ । ଟମ୍ ଛପି ଛପି ଭିତରକୁ ଗଲା ଖୁବ୍ ସନ୍ତର୍ପଣରେ ଏବଂ ମାଉସୀଙ୍କ ଖଟତଳେ ଲୁଚିଗଲା ।

ପୋଲି ମାଉସୀ କହିଲେ, "ସିଡ୍, ଦରଜା ବନ୍ଦ କରିଦେ । ତା' ନ ହେଲେ ପବନରେ ଆଲୁଅ ଲିଭିଯିବ ।" ସିଡ୍ ଦରଜା ବନ୍ଦ କରିଦେଲା । ପୋଲି ମାଉସୀ ଦୁଃଖ କରି କହୁଥାନ୍ତି, "ହାୟ ! ହାୟ ! ବିଚରା ଟମ୍ ବର୍ତ୍ତମାନ କେଉଁଠି କଣ କରୁଥିବ !" ଆଖିକୋଣରୁ ତାଙ୍କର ଟୋପା ଟୋପା ଲୁହ ଗଡ଼ି ପଡ଼ୁଥାଏ ।

ପ୍ରକୃତରେ ସେ ସେପରି ଦୁଷ୍ଟ ପିଲା ନୁହେଁ । ତାକୁ କେତେ ଦଣ୍ଡ ନ ଦେଇଛୁ ! ମାତ୍ର ପିଲା ସ୍ୱଭାବରେ ସେ ଖୁବ୍ ଭଲ । କେତେ-ବେଳେ କେମିତି ଦୁଷ୍ଟାମି କରୁଥିଲେ ବି ତାକୁ ଖରାପ ପିଲା ବୋଲି କହି ପାରିବ ନାହିଁ ।” ମିସେସ୍ ହାର୍ପାର୍ ମଧ୍ୟ କାନ୍ଦିବାରେ ଲଗିଥାନ୍ତି । କହୁଥାନ୍ତି, “ମୋ ଯୁ ବି ଖୁବ୍ ଭଲ ପିଲା । ସମୟ ସମୟରେ ମୋତେ ତାକୁ ବାଡ଼େଇବାକୁ ପଡ଼ିଛି । ବେଳେବେଳେ ଖୁବ୍ ନିର୍ମମ ହୋଇଛି ମଧ୍ୟ । ତଥାପି ତାକୁ ଖରାପ ପିଲା ବୋଲି ମୁଁ କେବେହେଲେ କହିପାରିବିନି ।”

ସିଦ୍ କହିଲା, “ତୁମେ ଯେତେ ଯାହା କହିଲେ ବି ପଛକେ ମାଉସୀ, ଟମ୍ କେବେହେଲେ ଭଲ ପିଲା ନୁହେଁ ।”

ମାଉସୀ କହିଲେ, “ସିଦ୍, ତୁ ସେପରି କଥା କହିପାରୁଛୁ କିପରି !” ଆଖିରୁ ତାଙ୍କର ଲୁହ ଝରିବା ବନ୍ଦ ହୋଇ ନ ଥାଏ । କାନ୍ଦି କାନ୍ଦି କହୁଥାନ୍ତି, “ଈଶ୍ୱର ତାହାର ମଙ୍ଗଳ କରନ୍ତୁ !”

ସିଦ୍ ବ୍ୟତୀତ ଅନ୍ୟମାନେ ସମସ୍ତେ କାନ୍ଦିବାରେ ଲଗିଥାନ୍ତି । ଖଟତଳେ ବସି ଟମ୍ ମଧ୍ୟ ଅଶ୍ରୁମୋଚନ କରୁଥାଏ । ଖଟତଳୁ ବାହାରି ମାଉସୀଙ୍କୁ ଦେଖା କରିବାକୁ ଖୁବ୍ ଇଚ୍ଛା ହେଉଥାଏ । କିନ୍ତୁ ମନର ଆବେଗକୁ ସମ୍ଭାଳି ସେ ବସିବା ଜାଗାରୁ ଉଠିଲା ନାହିଁ । ସେଇଠାରେ ବସି କିଏ କଣ କହୁଛି ଶୁଣିବାରେ ଲଗିଥାଏ । ପିଲାଯାକ ବୁଡ଼ିମଲେ ବୋଲି ସମସ୍ତେ ବିଶ୍ୱାସ କରିଥା'ନ୍ତି । କାରଣ ସେମାନଙ୍କର ଭେଲାଟି ଭାସି ଆସି ଗାଁ ପାଖରେ ଲଗିଥାଏ । ଅନ୍ତ୍ୟେଷ୍ଟିକ୍ରିୟା ରବିବାର ଦିନ ହେବାଗି ସ୍ଥିର ହୋଇଥାଏ ।

ମିସେସ୍ ହାର୍ପାର୍ ମନ ଦୁଃଖରେ ଘରକୁ ଫେରିଲେ । ପୋଲି ମାଉସୀ ଶୋଇବା ପାଇଁ ବିଛଣାକୁ ଗଲେ । କିଛି ସମୟ ପରେ ସେ ନିଘୋଡ଼ ନିଦରେ ଶୋଇପଡ଼ିଲେ । ପାଦ ଚପି ଚପି ଖୁବ୍ ସାବଧାନ

ସହକାରେ କୋଠର ଭିତରୁ ବାହାରିଗଲା ଟମ୍। ତାପରେ ଚାଲିଲା ଜେକ୍ସନ୍ସ ଦ୍ୱୀପରେ ଥିବା ସେମାନଙ୍କର ଗୁଡ଼ଣି ଆଡ଼କୁ। ରବିବାର ଦିନ ଯେଉଁ ଅନ୍ତ୍ୟେଷ୍ଟିକ୍ରିୟା ହେବାର ସ୍ଥିର ହୋଇଛି ସେଇକଥା ଚିନ୍ତା କରୁଥାଏ। ସେଇଦିନଟି ପାଇଁ ସେ ମନେ ମନେ ଏକ ବଢ଼ିଆ ଯୋଜନା ଗଢ଼ିବାରେ ଲଗିଥାଏ।

## ଜଳଦସ୍ୟୁମାନଙ୍କର ଘରକୁ ଫେରିବା ପାଇଁ ବ୍ୟାକୁଳତା ବଢ଼ିଲା

ଗୁଡ଼ଣିରେ ପହଞ୍ଚି ଟମ୍ ଦେଖିଲା ତା'ର ସାଙ୍ଗମାନେ ଉଠି ନାହାନ୍ତି। ଉଠୁ ଉଠୁ ସେମାନଙ୍କର ବିଳମ୍ବ ହେଲା। ସେମାନେ ଉଠିବା ପରେ ଟମ୍ ସେମାନଙ୍କ ଆଗରେ ଗାଁକୁ ଯିବାକଥା କହି ନ ଥାଏ। କିଛିଦିନ ପରି ସମସ୍ତେ ସାଙ୍ଗ ହୋଇ ଖେଳିଲେ, ପହଁରିଲେ, ମାଛ ଧରିଲେ। ତାପରେ ତିନିହେଁ ମିଶି ଗଲେ ନଈ-କୂଳକୁ! ସେଠାରେ ବସି ଚାହିଁ ରହିଥାନ୍ତି ଗାଁ ଆଡ଼େ। ସମସ୍ତଙ୍କ ମନରେ ଘରକୁ ଫେରିଯିବାର ବ୍ୟାକୁଳତା ବଢ଼ି ଉଠୁଥାଏ। କିନ୍ତୁ କେହିହେଲେ ଜଣେ ମୁହଁଫିଟାଇ ସେ କଥା କହୁ ନ ଥାଏ। ଗୋଡ଼ର ବଡ଼ ଆଙ୍ଗୁଠି ସାହାଯ୍ୟରେ ବାଲି ଉପରେ ଟମ୍ ବେକିର ନାମ ଲେଖିଲା। କିନ୍ତୁ ପୁଣି ଲିଭାଇ ଦେଲା। ପୁଣି ଲେଖିଲା। ମାଉସୀ ଓ ବେକି ଏଇ ଦୁଇଜଣଙ୍କୁ ଦେଖିବାଲାଗି ତା ମନ ଆଉଟି-ପାଉଟି ହେଲା। ବିଚରା ହାକ୍‌ର ଘର ବୋଲି କିଛି ନ ଥାଏ। ତଥାପି ଗାଁ ମାଟିର ମମତା ତା ମନକୁ ଟାଣୁଥାଏ। ସବା

ଶେଷରେ ମନକଥା ଲୁଚିପିରଖି ନ ପାରି ଯୁ' କହିଲା, "ମୋର କାହିଁକି ଘରକୁ ଯିବାଲାଗି ବଡ଼ ଇଚ୍ଛା ହେଉଛି ।"

ଟମ୍ କହିଲା, "ଚାଲ, ମାଛ ଧରିବାକୁ ଯିବା ।"

"ମାଛ ଧରିବା ପାଇଁ ମୋର ଇଚ୍ଛା ହେଉ ନାହିଁ । ମୁଁ ଘରକୁ ଯିବି ।"

"ତାହା କରିବାକୁ ଯେବେ ମନ ନାହିଁ, ଚାଲ, ପହଁରିବାକୁ ଯିବା ।"

"ନା, ପହଁରିବା ପାଇଁ ବି ମୋର ମନ ନାହିଁ । ଘରକୁ ଯିବା ଛଡ଼ା ମୋର ଆଉ କୌଣସି କଥାରେ ଇଚ୍ଛା ନାହିଁ ।"

ଟମ୍ କହିଲା, "ଯୁ', ତୁ ଗୋଟିଏ ଅତି ଛୋଟ ପିଲା ପରି କଥା କହୁଛୁ । ଖାଲି ସେଇ ଗୋଟିଏ କଥା – ଘରକୁ ଯିବି, ମାଆକୁ ଦେଖିବି ।"

"ହାକ୍, ତୋ କଥା ପୁଣି କଣ ? ତୁ ନିଶ୍ଚୟ ଏଠାରେ ରହିବାକୁ ଇଚ୍ଛା କରୁଥିବୁ । କଣ କହୁଛୁ ?"

ହାକ୍ ଧୀରେ ଧୀରେ କହିଲା, "ହଁ ।"

ମାତ୍ର ଠିକ୍ ତା'ର ପର ମୁହୂର୍ତ୍ତରେ ନିଜର ମତ ବଦଳାଇ କହିଲା, "ନା, ମୁଁ ଯୁ' ସାଙ୍ଗରେ ଗାଁକୁ ଫେରିଯିବି । ଜାଗାଟା ଖୁବ୍ ସୁନ୍ଦର ହେଲେ ବି ବଡ଼ ନିଛାଟିଆ । ଡର ମାଡୁଛି । ଖୁସି ଲାଗୁନି । ଟମ୍, ତୁ ବି ଆମ ସାଙ୍ଗରେ ଫେରି ଚାଲ ।"

"ନା, ନା । ସେ କଥା ହୋଇପାରିବ ନାହିଁ । ଯେବେ ଇଚ୍ଛା ହେଉଛି, ତୁମେମାନେ ଯାଇପାର । କିନ୍ତୁ ମୁଁ ଏଇଠାରେ ରହିବି ।"

ହାକ୍ ଏବଂ ଯୁ' ନଈଆଡ଼କୁ ଚାଲିଗଲେ । ପହଁରିବାକୁ ବସିଛନ୍ତି ଠିକ୍ ଏତିକିବେଳେ ଟମ୍ ପଛରୁ ପାଟି କରି କହିଲା, "ଗୋଟିଏ ମିନିଟ୍ ପାଇଁ ଅପେକ୍ଷା କର । ତୁମମାନଙ୍କୁ ଗୋଟିଏ କଥା କହିବାର

ଅଛୁ ।" ଦୌଡ଼ ଦୌଡ଼ ଯାଇ ଟମ୍ ତାର ସାଙ୍ଗମାନଙ୍କ ପାଖରେ ପହଞ୍ଚିଲା । ରବିବାର ପାଇଁ ସେ କି ପ୍ରକାର ଯୋଜନା କରିଛି ତା'ର ସାଙ୍ଗମାନଙ୍କୁ ଜଣାଇଲା । ସେମାନେ ତାର ଯୋଜନା କଥା ଶୁଣି ହସି ହସି ଗଡ଼ିଗଲେ । କହିଲେ, "ତୋ ଯୋଜନା ମାନି କାମ କଲେ ଘର ବଡ଼ିଆ ହେବ ।" ତାପରେ ଟମ୍ ସାଙ୍ଗରେ ମିଶି ସେମାନେ ଛାଉଣିକୁ ଫେରିଲେ ।

ମଧ୍ୟାହ୍ନ ଭୋଜନ ଶେଷ ହେଲା । ଭୋଜନ ପରେ ହାକ୍ ତାହାର ଧୂମନଳୀ ବାହାର କରି ଧୂମପାନ କରିବାରେ ଲାଗିଲା । ସେ ଧୂଆଁ ପିଇବାରେ ଅଭ୍ୟସ୍ତ । ନାକ-ପାଟି ଦେଇ ଭୁସ୍ ଭୁସ୍ ଧୂଆଁ ବାହାର କରି ଦେଉଥାଏ । ଟମ୍ ଏବଂ ଯୁ'ଙ୍କର ଧୂଆଁ ପିଆ ଶିଖିବାକୁ ମନ ହେଲା । ସେମାନେ ଜଳଦସ୍ୟୁ ସାଜିଥିବାରୁ ସେମାନଙ୍କର ଧୂଆଁ ପିଇ ଜାଣିବା ନିତାନ୍ତ ଦରକାର । ଟମ୍ ଓ ଯୁ' ଶିଖିବାକୁ ଆରମ୍ଭ କଲେ ।

ଟମ୍ କହିଲା, "ଏହା ତ ଆଦୌ କଷ୍ଟକର କାମ ନୁହେଁ । ଧୂଆଁ ପିଇବାକୁ ମୋତେ କାହିଁକି ଖୁବ୍ ଭଲ ଲାଗୁଛି ।"

ଯୁ' କହିଲା, "ମୋ ମତ ବି ଠିକ୍ ସେଇଆ ।"

ଉଭୟେ ଅନେକ ସମୟ ଧରି ଧୂଆଁ ପିଇବାରେ ଲାଗିଲେ । ଧୀରେ ଧୀରେ ସେମାନଙ୍କର ମୁହଁର ଜ୍ୟୋତି ଫିକା ପଡ଼ି ଆସିଲା । ସେମାନେ ଧୂମନଳୀ ପକାଇଦେଲେ ।

ଯୁ' କହିଲା, "ମୋତେ କାହିଁକି ଭଲ ଲାଗୁ ନାହିଁ ।"

ଟମ୍ କହିଲା, "ମୋ ଦେହଟା ବି ଖରାପ ଲାଗୁଛି ।"

ହାକ୍ ସାଙ୍ଗ ଦୁହିଁଙ୍କୁ ଖୋଜିଲା ଗୋଟିଏ ଗଛମୂଳରେ ବସିଥାଏ ବହୁତ ସମୟ ଧରି । ଟମ୍ ଏବଂ ଯୁ' ଧାଇଁ ଧାଇଁ ଯାଇ ପହଞ୍ଚିଲେ ତା ପାଖରେ । ଦୁହେଁଯାକ ଖୁବ୍ ଦୁର୍ବଳ ଏବଂ ଅସୁସ୍ଥ ଜଣା-ପଡ଼ୁଥାନ୍ତି ।

ହାକ୍ ପଚାରିଲା, "କପରି ଲାଗୁ ଛି ?"

ସେମାନେ ସମସ୍ୱରରେ କହିଲେ, "ଆଗଠାରୁ ଆହୁରି ଭଲ ଲାଗୁ ଛି ।" ସେମାନଙ୍କର ସ୍ୱରରୁ ଜଣାପଡ଼ୁଥାଏ ଯେ ସେମାନେ ପୂର୍ବାପେକ୍ଷା ଅଧିକ ଦୁର୍ବଳ ହୋଇ ପଡ଼ିଛନ୍ତି । ସେମାନଙ୍କର ଫିକା ମୁହଁରେ ରକ୍ତ ସଞ୍ଚାର ନ ଥାଏ । କିଛି କଥା ନ କହି ଧୀରସ୍ଥିର ଭାବରେ ବସିଥାନ୍ତି ।

ଟିକେ ପରେ ହାକ୍ କହିଲା, "ମୋର ପୁଣି ଧୂଆଁ ପିଇବାକୁ ଇଚ୍ଛା ହେଲାଣି । ତୁମେ ପିଇବ କି ?" ସେ ଦୁହେଁ ତରତର ହୋଇ କହିଲେ, "ନା ! ନା !"

## ଝଡ଼

ରାତି ହେଲା । ପିଲାଏ ମନ ଆନନ୍ଦରେ ଶୋଇବାକୁ ଗଲେ । ଅର୍ଦ୍ଧରାତ୍ର ପର୍ଯ୍ୟନ୍ତ ସେମାନେ ନିଘୋଡ଼ ନିଦରେ ଶୋଇ ରହିଲେ । ସହସା କେଉଁଆଡ଼ୁ ଏକ ଭୟାନକ ଝଡ଼ ମାଡ଼ି ଆସିଲା । ସେମାନଙ୍କର ନିଦ ଭାଙ୍ଗିଗଲା । ଝଡ଼ ଆରମ୍ଭ ହେବା ସମୟରେ ସେମାନେ ଗଛ ତଳେ ଶୋଇଥାନ୍ତି । କଳା କଟି କଟି ଆକାଶ ଉପରେ ବିଜୁଳି ମାରି ଦେଉଥାଏ, ଚକ୍ ଚକ୍ କରି । ତା ପଛେ ପଛେ ଘଡ଼ଘଡ଼ିର କି କଡ଼କଡ଼ ମଡ଼ମଡ଼ ଶବ୍ଦ ! ହୃତ୍କମ୍ପ ଜାତ ହେଉଥାଏ ! କାନର ପରଦା ଫାଟିଯିବା ପରି ଜଣାପଡ଼ୁଥାଏ । ଅଳ୍ପ ସମୟପରେ ଡାକିଲା ବର୍ଷା, ଯାହାକୁ କହନ୍ତି ଦୁଇ ମୁହଁରେ । ଚିତ୍କାର କରି ଟମ୍ କହିଲା, "ରହିଛ କଣ ? ତମ୍ବୁ ତଳକୁ ଧାଇଁ ଚାଲ ।" ମାତ୍ର ଝଡ଼ର ଗୁ ରୁଗର୍ଜନ ଭିତରେ ତାହାର ଚିତ୍କାର କେଉଁଆଡ଼େ ମିଳାଇଗଲା ।

କାହାରି କାନରେ ବାଜିଲା ନାହିଁ । ସେ ଆଖିବୁଜି ଦୌଡ଼ିଲା ତମ୍ବୁ ଆଡ଼େ । ଅନ୍ୟମାନେ ତାକୁ ଅନୁସରଣ କଲେ । ତମ୍ବୁ ପାଖରେ ପହଞ୍ଚିବାବେଳକୁ ସେମାନେ ସମ୍ପୂର୍ଣ୍ଣ ଓଦା ହୋଇ ଯାଇଥାନ୍ତି । ତିନିଜଣଯାକ ତମ୍ବୁ ତଳେ ଛିଡ଼ା ହୋଇଥାନ୍ତି । ସର୍ବାଙ୍ଗ ଥରୁଥାଏ ତାଳବରଡ଼ା ପରି । ପବନର ବେଗ କ୍ରମଶଃ ବଢ଼ିବାରେ ଲାଗିଥାଏ ।



ଅଚାନକ ଭାବରେ ଦମକାଏ ପବନ ପଶି ଆସି ତମ୍ବୁଟିକୁ ଉଡ଼ାଇ-ନେଲା । ନଈକୂଳରେ ତେଙ୍ଗା ଗଛଟାଏ ଠିଆ ହୋଇଥାଏ । ଆଶ୍ରୟ ନେବା ପାଇଁ ମିଳି ତିନିଜଣ ଜୀବନମୂର୍ଚ୍ଛା ଦୌଡ଼ିଲେ ତାହାର ମୂଳକୁ । ଉପରେ ବୃଷ୍ଟି ଥରୁଥାଏ । ଝଡ଼ବାତ୍ୟାର ଲୋମହର୍ଷଣକାରୀ ଗର୍ଜନ ସେମାନଙ୍କ ମନରେ ଆତଙ୍କ ଜାତ କରୁଥାଏ । କଡ଼ମଡ଼ ଶବ୍ଦ କରି ଗୋଟିକ ପରେ ଆଉ ଗୋଟିଏ ଗଛ ଭୂତଳଶାୟୀ

ହେବାରେ ଲାଗିଥାଏ । ପ୍ରତ୍ୟେକ ପିଲା ଭାବୁଥାଏ, "ପବନ ତୋଡ଼ରେ ଆମେ ଆଶ୍ରା ନେଇଥିବା ଗଛଟି ଭାଙ୍ଗିଯିବ କି ? ଯଦି ଭାଙ୍ଗିଯାଏ... !"

ଝଡ଼ ପ୍ରଶମିତ ହେଲା । ପିଲାମାନେ ସେମାନଙ୍କର ଛାଉଣିଆଡ଼କୁ ଅଗ୍ରସର ହେଲେ । ମାତ୍ର ସେତେବେଳକୁ ଛାଉଣିର ସବୁ ଲଣ୍ଡ ଭଣ୍ଡ ଯାଇଥାଏ । ପବନର ବେଗରେ ତମ୍ବୁ ଉଡ଼ି ଯାଇଥାଏ । ଗଛର ଭଙ୍ଗାଡାଳ ଦ୍ଵାରା ଭୂଇଁର ଉପରଭାଗ ସମ୍ପୂର୍ଣ୍ଣରୂପେ ଲୁଚି ଯାଇଥାଏ । ସବୁ ଜିନିଷ ଓଦା । ଭୂଇଁ ସନ୍ତସନ୍ତିଆ । କାଠସବୁ ଓଦା ହୋଇ ଯାଇଥିବାରୁ ଅନେକ ସମୟ ପର୍ଯ୍ୟନ୍ତ ସେମାନେ ନିଆଁ ଜାଳି ପାରିଲେ ନାହିଁ । ବାରମ୍ବାର ଚେଷ୍ଟା କରିବାରେ ଲାଗିଥାନ୍ତି । ଶେଷରେ ସେମାନେ କୃତକାର୍ଯ୍ୟ ହେଲେ । ଏତେ ହଇରାଣ ହରକତ ହେବାପରେ ପିଲାଗୁଡ଼ିକ ହାଲିଆ ହୋଇ ପଡ଼ିଥାନ୍ତି । କିପରି ଯାଇ ଘରେ ପହଞ୍ଚିବେ ସେଥିପାଇଁ ସେମାନଙ୍କର ମନ ଅସ୍ଥିର ହୋଇ ପଡ଼ୁଥାଏ । ଘରର ବିଛଣାପଟା, ଶାନ୍ତି ଏବଂ ନିରାପତ୍ତା କଥା ଭାବି ସେମାନଙ୍କର ଘରକୁ ଯିବାର ଆବେଗ ବଢ଼ି ଉଠୁଥାଏ ।

ଦେଖୁ ଦେଖୁ ଆକାଶ ମେଘମୁକ୍ତ ହେଲା । ନିର୍ମଳ ସୂର୍ଯ୍ୟକିରଣ ବୃଣି ହୋଇଗଲା ଚାରିଆଡ଼େ । ପିଲାମାନଙ୍କର ଓଦା ଦେହ ଶୁଖିଗଲା ଘଡ଼ିକ ଭିତରେ । ସମସ୍ତେ ନିଆଁ ଚାରିପଟେ ବସିଥାନ୍ତି । ବେଶୀ କଥା କହିବାକୁ କାହାରି ଇଚ୍ଛା ନ ଥାଏ । ସେମାନଙ୍କର ଦେହ-ଗୁଡ଼ାକ ଜେକସନ୍‌ସ ଦ୍ଵୀପରେ ପଡ଼ି ରହିଥିଲେ ବି ମନ ଉଡ଼ୁଥାଏ ନିଜ ନିଜର ଘରେ । ମାଆ-ମାଉସୀ ଏବଂ ଜନ୍ମମାଟି ପାଖରେ । ଟମ୍ ସମସ୍ତଙ୍କ ଆଗରେ ପୁଣି ଥରେ ରବିବାରର ଯୋଜନା କଥା ବର୍ଣ୍ଣନା କଲା । ତାହା ଶୁଣିବା ପରେ ସମସ୍ତଙ୍କ ମନ ଏକ ଅକୁହା ଆନନ୍ଦରେ ନାଚି ଉଠିଲା । ଏହାପରେ ସେମାନେ "ରେଡ଼୍

ଇଣ୍ଡିୟାନ୍’’ ବୋଲି ଗୋଟିଏ ଖେଳ ଖେଳିବାରେ ଲାଗିଲେ । ଏଇ ଖେଳରେ ପରସ୍ପର ମଧ୍ୟରେ ଲଢ଼େଇ କରିବାକୁ ପଡ଼େ । ଥକିଯିବା ପର୍ଯ୍ୟନ୍ତ ସେମାନେ ପରସ୍ପର ସହିତ ଲଢ଼େଇ କରିବାରେ ଲାଗିଲେ । ସେମାନଙ୍କର ଆନନ୍ଦ କଳ୍ପନାର ମାନଲା ନାହିଁ । କାରଣ ସେଇ ରାତିଟା ସେମାନଙ୍କର ସେଠାକାର ଶେଷ ରାତି ଥାଏ । ତହିଁ ଆରଦିନ ରବିବାର ହେବ । ସେମାନେ ସମସ୍ତେ ଘରକୁ ଫେରି ମାଆ-ମାଉସୀଙ୍କ ମୁହଁ ଦେଖିବେ ।

ହାକ୍ ନିଜର ଧୂମନଳୀଟି ଧରି ଶାନ୍ତିରେ ଧୂମପାନ କରିବାରେ ଲାଗିଲେ । ଧୂଆଁ ପିଇବାକୁ ଇଚ୍ଛା ହେଉଛି କି ନାହିଁ ବୋଲି ସେ ଟମ୍ ଏବଂ ଯୋ'କୁ ପଚାରିଲା । ମାତ୍ର ପୂର୍ବପରି ସେମାନେ ତାହା ଋହାନ୍ତି ନାହିଁ ବୋଲି ଖୋଲ୍‌ଖୋଲ୍ ମନା କରିଦେଲେ ।

## ଅନ୍ତ୍ୟେଷ୍ଟି କ୍ରିୟା

ଗାଁ ଭିତରକୁ ଯାଅ, ଯେଉଁଠି ଶୁଣିବ ସେଇ ପିଲା ତିନି ଜଣଙ୍କର କଥା । ପ୍ରତ୍ୟେକଙ୍କର ମୁଣ୍ଡରେ ଗଦାଏ ଦୁଃଶ୍ଚିନ୍ତା । ମନରେ ଗଭୀର ଦୁଃଖ । ପୋଲି ମାଉସୀ, ମିସେସ୍ ହାର୍‌ପାର୍ ଆଉ ବେକି—ଏମାନଙ୍କର ଯେ କେତେ ଦୁଃଖ ସେ କଥା କହିହେବ ନାହିଁ । ଟମ୍‌ର ନାଁ ଶୁଣିଲାବେଳକୁ ବେକିର ଆଖିରୁ ବହିଥାଏ ଧାର ଧାର ଲୁହ ।

ସେ ଦିନଟା ଥାଏ ରବିବାର । ସକାଳ ହୋଇଥାଏ । ଢଂ ଢଂ ହୋଇ ଗୀର୍ଜାରେ ଶୋକସୂଚକ ଘଣ୍ଟା ବାଜିବାରେ ଲାଗିଥାଏ । ଅନ୍ତ୍ୟେଷ୍ଟିକ୍ରିୟାରେ ଯୋଗଦେବାଲାଗି ଗାଁର ଲୋକମାନେ ଧୀରେ

ଧୀରେ ଚାଲିଥାନ୍ତି ଗୀର୍ଜା ଆଡ଼କୁ । ସିଦ୍ ଏବଂ ମେରିକୁ ଧରି ପୋଲି ମାଉସୀ ସେଇଠାରେ ଥାନ୍ତି । ମିସେସ୍ ହାର୍‌ପାର୍ ମଧ୍ୟ ତାଙ୍କ ପରିବାରର ସମସ୍ତଙ୍କୁ ଧରି ଉପସ୍ଥିତ ଥାନ୍ତି ସେଇ ଗୀର୍ଜାରେ । ଶୋକର ଚିହ୍ନ ରୂପେ ସମସ୍ତେ କଳା ପୋଷାକ ପରିଧାନ କରିଥାନ୍ତି ।



ଦୁଃଖାବହ ଅନ୍ତ୍ୟେଷ୍ଟିକ୍ରିୟା ଆରମ୍ଭ ହେଲା । ସମସ୍ତଙ୍କ ଆଖିରୁ ବହୁଥାଏ ଧାର ଧାର ଅଶ୍ରୁ, ଠିକ୍ ଶ୍ରାବଣର ବାରିଧାରା ପରି । ହଠାତ୍ ଗୀର୍ଜାର ଦରଜା ଖୋଲିଗଲା । ଆଖି ଫେରାଇ ସମସ୍ତେ ସେ ଆଡ଼କୁ ଚାହିଁଲେ । ମାତ୍ର ଇଏ କ'ଣ ! କେହି ନିଜର ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ଗୀର୍ଜା ଭିତରୁ ବାହାରି ଆସୁଥାଏ ଟମ୍ ! ତା ପଛେ ପଛେ ଆସିଲା ଯୋ' । ଯୋ' ପଛକୁ ଚାଲିଥାଏ ହାକ୍ । ଏମାନେ ସବୁ ପୂର୍ବର ସେଇ ଦୁଷ୍କୃତ ପିଲା ନା ସେମାନଙ୍କର ଭୂତ ? ସମସ୍ତଙ୍କ ଆଖିରେ ପ୍ରଶ୍ନବାଚୀ । ଗୀତ ଗାଇବା ବନ୍ଦ ହୋଇଗଲା ।

ସମସ୍ତଙ୍କ ଆଖିରୁ ବହୁଥିବା ଲୁହର ଝର ଅଟକି ଗଲା । ସବୁରି ମୁହଁରେ ବସନ୍ତର ଶୋଭା ।

ପିଲାଗୁଡ଼ିକ ବୁଡ଼ିଯାଇ ନାହାନ୍ତି । ସେମାନେ ଏ ଦୁନିଆରୁ ବିଦାୟ ନେଇ ଚାଲି ଯାଇ ନାହାନ୍ତି । ସେମାନେ ବଞ୍ଚି ରହିଛନ୍ତି ଆଗ ପରି । ସମସ୍ତଙ୍କ ମନରେ ଆନନ୍ଦର ଜୁଆର ଉଠିଲା । ପୋଲି ମାଉସୀ, ମିସେସ୍ ହାର୍‌ପାର୍ ଆନନ୍ଦରେ ଆତ୍ମହରା ହେଲେ । ଟମ୍ ଓ ଯୁ଼ଙ୍କୁ କୁଣ୍ଢାଇ ରଖି ସେମାନଙ୍କ ମୁଖମଣ୍ଡଳରେ ସହସ୍ର ଚୁମ୍ବନ ଅଜାଡ଼ି ଦେଲେ ମାଆ-ମାଉସୀ ଦୁଇଜଣ । ଆଲିଙ୍ଗନ କରିବା ପାଇଁ ବିଚରା ହାକ୍‌ର କେହି ନ ଥାଏ । ଟମ୍ କହିଲା, "ହାକ୍ ମଧ୍ୟ ଆମ ସହିତ ଫେରି ଆସିଛି । ତାକୁ ଚୁମ୍ବନ ଦେବା ପାଇଁ କଣ କେହି ନାହିଁ ?" ପୋଲି ମାଉସୀ କହିଲେ, "ମୁଁ ବଞ୍ଚି ଥାଉ ଥାଉ କିଏ କହିବ ଯେ ତା'ର କେହି ନାହିଁ ।" ସେ ହାକ୍‌କୁ ଧରି ତା' ଉପରେ ଚୁମ୍ବନ ପରେ ଚୁମ୍ବନ ଆଙ୍କିଦେଲେ ବାରମ୍ବାର । ହାକ୍‌ର ମୁଖମଣ୍ଡଳ ରକ୍ତିମ ଦେଖାଗଲା । ଏହା ପୂର୍ବରୁ ତାକୁ କେହି କେବେହେଲେ ଦୟା ଦେଖାଇ ନ ଥିଲା ।

ଟମ୍‌ର ଯୋଜନା ସଫଳ ହେଲା । ନିଜ ନିଜର ଅନ୍ତ୍ୟେଷ୍ଟି-କ୍ରିୟାରେ ଯୋଗଦେବା ପାଇଁ ସେମାନେ ଗାଁକୁ ଆସିବାଲାଗି ଯୋଜନା କରିଥିଲେ । ସେ କ୍ରିୟା ଆରମ୍ଭ ନ ହେବା ପର୍ଯ୍ୟନ୍ତ ସେମାନେ ଲୁଚି ରହିଥାନ୍ତି । କାମ ଆରମ୍ଭ ହେବାରୁ ସେମାନେ ଛପି ଛପି ପଶି ଯାଇଥିଲେ ଗୀର୍ଜା ଭିତରକୁ ।

ପ୍ରତ୍ୟେକେ ପିଲାମାନଙ୍କ ପ୍ରତି ସଦୟ ହୋଇପଡ଼ିଲେ । ଏକ ଅଭୁତ ଆନନ୍ଦର ଉଚ୍ଛ୍ୱାସ ଦେଖାଦେଲା ସବୁରି ହୃଦୟରେ । ଗୋଟିଏ ବଡ଼ ଭୋଜିର ଆୟୋଜନ କରାଗଲା । ସବୁ ସରିବା ପରେ ପୋଲି ମାଉସୀ ଟମ୍‌କୁ କହିଲେ, "ତୁ ଆଗରୁ ନ ଆସିଲୁ କାହିଁକି ?

ତୁ ଯେ ସତରେ ବଞ୍ଚିଛୁ ମୁଁ ଏହା ଭାବି ନ ଥିଲି । ଆଗରୁ ଆସି ନିରାପଦରେ ଅଛୁ ବୋଲି ମୋତେ ନ ଜଣାଇଲୁ କାହିଁକି ? ଏଥିରୁ ଯାହା ଜାଣୁଛି ତୁ ତୋର ମାଉସୀକୁ ଭଲ ପାଉ ନାହୁଁ ।”

ଟମ୍ କହିଲା, “ସେକଥା କୁହ ନାହିଁ ମାଉସୀ । ମୁଁ ଯେବେ ତୁମକୁ ଭଲ ନ ପାଏ, ତାହାହେଲେ ତୁମକୁ ସ୍ୱପ୍ନ ଦେଖିଲି କପରି ?”

ପୋଲି ମାଉସୀ ଟମ୍‌ର ଯୁକ୍ତି କାଟି ପାରିଲେ ନି । ପଚାରିଲେ, “ତୁ କି ଧରଣର ସ୍ୱପ୍ନ ଦେଖିଲୁ ?”

ଟମ୍ ତାହାର ସ୍ୱପ୍ନ କଥା ବର୍ଣ୍ଣନା କଲା ।

## ଟମ୍‌ର ସ୍ୱପ୍ନ

ସ୍ୱପ୍ନ କଥା ବର୍ଣ୍ଣନା କରିବାକୁ ଯାଇ ଟମ୍ କହିଲା, “ସ୍ୱପ୍ନ ଦେଖିଲି ତୁମେ ସିଦ୍, ମେରି ଏବଂ ମିସେସ୍ ହାର୍‌ପାର୍‌ଙ୍କୁ ଧରି ଏହିଠାରେ ବସିଥାଅ । ମୋର ଯାହା ମନେପଡ଼ୁଛି, ଏହା ବୁଧବାର ଦିନ ରାତିର କଥା ହେବ ବୋଧହୁଏ । ହଁ, ଏହା ସେଇ ରାତିର...”

“ତୁ ଯାହା କହିଲୁ ତାହା ଠିକ୍ କଥା । ତା ପରେ କଣ ହେଲା କହ ।”

“ହଠାତ୍ ପବନ ଆସିଲା । ବତିଟା ଅଳ୍ପ ସମୟ ଭିତରେ ଲିଭିଯିବା ପରି ଜଣାଗଲା । ତୁମେ କହିଲ, ‘ସିଦ୍, ଦରଜାଟା ଶୀଘ୍ର ବନ୍ଦ କରି ଦେ ।’ ସିଦ୍ ତୁମ କଥା ମାନି ଉଠିଗଲା ଏବଂ ଦରଜାଟା ବନ୍ଦ କରିଦେଲା ।”

"ଟମ୍ ! ତୋ ସ୍ୱପ୍ନ କଥା ପ୍ରକୃତ ଘଟଣା ସଙ୍ଗେ ଏତେ ମେଳ-ଖାଉଛି ଯେ ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ତା ପରେ କ'ଣ ହେଲା କହ ।"

"ତା ପରେ ତୁମେ କହିଲ, 'ଟମ୍ ପ୍ରକୃତରେ ଖରାପ ପିଲା ନୁହେଁ । କେତେବେଳେ କେମିତି ଦୁଷ୍ଟାମି କରେ ସତ । ତଥାପି ତାକୁ ଦୁଷ୍ଟ ପିଲା ବୋଲି ମୁଁ କେବେହେଲେ ଭାବେ ନାହିଁ ।"

"ହଁ, ମୁଁ ପ୍ରକୃତରେ ସେ କଥା କହିଥିଲି । ଆଚ୍ଛା, ତା ପରେ କ'ଣ ହେଲା ?"



"ତା ପରେ ତୁମେ କାନ୍ଦିବାରେ ଲାଗିଲ । ମିସେସ୍ ହାର୍ପାର୍ ମଧ୍ୟ ତୁମ ପାଖରେ ବସି କାନ୍ଦୁଥାନ୍ତି । ସେ ଯୋ'କୁ ପ୍ରକୃତରେ ଗୋଟିଏ ଭଲ ପିଲା ବୋଲି କହୁଥାନ୍ତି । ଅନେକ ସମୟରେ ରାଗରେ ତାକୁ ବାଡ଼େଇଥିବାରୁ ସେ ଦୁଃଖ ପ୍ରକାଶ କରୁଥାନ୍ତି ।"

"ତୋ ସ୍ୱପ୍ନ କଥା ଯେତେ ଯାହା କହିଗଲୁ ସବୁ ଅକ୍ଷରେ ଅକ୍ଷରେ ସତ୍ୟ । ମୁଁ ବର୍ତ୍ତମାନ ଯାଇ ମିସେସ୍ ହାର୍‌ପାର୍‌ଙ୍କୁ ଏସବୁ କଥା କହିବ । ଏହା ଶୁଣିଲେ କିଏ ବିସ୍ମିତ ନ ହେବ !"

"ତା ପରେ ସିଡ୍ କହିଲା ଯେ ମୁଁ ଗୋଟିଏ ଦୁଷ୍ଟ ପିଲା ।"

"ହଁ ! ହଁ ! ସେ ପ୍ରକୃତରେ ସେ କଥା କହିଥିଲା ।"

"ତୁମେ କହିଲ, 'ତୁ ସେପରି କେମିତି କହିପାରୁଛୁ, ସିଡ୍ ।' ଟମ୍ କେବେହେଲେ ମୋ ପ୍ରତି ଖରାପ ବ୍ୟବହାର ଦେଖାଇ ନାହିଁ । ଅଧିକାଂଶ ସମୟରେ ମୁଁ ତାକୁ ଦଣ୍ଡ ଦେଇଛି । ତା ପ୍ରତି କେତେ ନିର୍ମମ ହୋଇଛି । ଏଇସବୁ କଥା କହିବାବେଳେ ତୁମେ କାନ୍ଦିବାରେ ଲାଗିଥାଅ ।"

"ଟମ୍, ତୁ ଯାହା ଯାହା କହିଗଲୁ, ସବୁକଥା ଠିକ୍ ସେହିପରି ଘଟିଥିଲା । ସ୍ୱପ୍ନରେ ଆଉ କ'ଣ ଦେଖିଲୁ କହ ।"

"ତୁମେ ଭେଳା କଥା, ପୁଣି ରବିବାର ଦିନ ପାଳିତ ହେବାକୁ ଥିବା ଅନ୍ତ୍ୟେଷ୍ଟିକ୍ରିୟା କଥା କହୁଥାଅ । ତୁମେ ଏତେ ବେଶୀ କାନ୍ଦୁଥାଅ ଯେ ତୁମର ସବୁକଥା ମୋ କାନରେ ପଶୁ ନ ଥାଏ । ମିସେସ୍ ହାର୍‌ପାର୍ ମଧ୍ୟ ଖୁବ୍ କାନ୍ଦୁଥାନ୍ତି । ପରିଶେଷରେ ସେ ଘରକୁ ଯିବା ପାଇଁ ଉଦ୍ୟତ ହେଲେ । ତୁମେ ମଧ୍ୟ ଶୋଇବାକୁ ଗଲ ।"

"ସ୍ୱପ୍ନ କଥା ପୁଣି, ଏତେ ବେଶୀ ସତ୍ୟ ହୋଇପାରେ ! ମୋତେ ବାସ୍ତବିକ୍ ଖୁବ୍ ଆଶ୍ଚର୍ଯ୍ୟ ଲାଗୁଛି, ଟମ୍ । ଆଉ କିଛି କଥା ତୋର ମନେପଡ଼ୁଛି କି ?"

"ହଁ, ତୁମେ ଶୋଇଯିବା ପରେ ମୁଁ ତୁମକୁ ଚୁମ୍ବନ ଦେଲି ।"

"ଏହା କ'ଣ ସତ ? ଟମ୍, ସତରେ କ'ଣ ତୁ ମୋତେ ଚୁମ୍ବନ ଦେଇଥିଲୁ ?"

"ସମ୍ପୂର୍ଣ୍ଣ ସତ, ମାଉସୀ । ଏସବୁ ମୋର ସ୍ବପ୍ନରୁ ଟିକେହେଲେ ଲମ୍ଭଯାଇ ନାହିଁ ।"

"ଟମ୍, ବାସ୍ତବିକ୍ ତୁ ଖୁବ୍ ଭଲ ପିଲା ।"

ପୋଲି ମାଉସୀଙ୍କର ଆନନ୍ଦ କଥା କହିଲେ ନ ସରେ । ତାଙ୍କ ଓଠରେ ହସ ଲାଗି ରହିଥାଏ । ହସି ହସି ସେ ଯାଇ ପହଞ୍ଚିଲେ ଘୋଷାଇଘର ଭିତରେ ଥିବା ଆଲମାରି ପାଖରେ । ଖୋଜି ଖୋଜି ତା' ଭିତରୁ ସବୁଠାରୁ ବଡ଼ିଆ ଆତଟିଏ ବାହାର କଲେ ଏବଂ ଟମ୍ ହାତକୁ ବଢ଼ାଇଦେଇ ପୁଣି କହିଲେ, "ଟମ୍, ମୁଁ ତୋତେ ଭଲ ପିଲା ବୋଲି ଆଗରୁ ଜାଣି ରଖିଛି ।"

ଟମ୍ ସ୍ବପ୍ନ କଥା ବର୍ଣ୍ଣନା କରୁଥିବା ବେଳେ ସିଡ୍ ମନ ଦେଇ ସବୁକଥା ଶୁଣୁଥାଏ । କଥା ଶେଷରେ ତାକୁ ଦେଖି ଜଣାପଡ଼ୁଥାଏ ସତେ ଯେପରି ସେ କେତେ କଣ ଭାବିବାରେ ଲାଗିଛି । ମନେ ମନେ ଭାବୁଥାଏ, "ଇଏତ କି ଆଶ୍ଚର୍ଯ୍ୟଜନକ ସ୍ବପ୍ନ !"

## ଟମ ଅଡୁଆରେ ପଡ଼ିଲା

ଜେକ୍‌ସନ୍‌ସ ଦ୍ବୀପକୁ ଯାଇ ଟମ୍ ଯେଉଁସବୁ ଦୁଃସାହସିକ କାର୍ଯ୍ୟ କଲା ତାହାଦ୍ବାରା ସେ ଅନ୍ୟମାନଙ୍କ ଆଖିରେ ଖୁବ୍ ସାହସୀ ପିଲା ରୂପେ ପରିଚିତ ହେଲା । ସବୁ ପିଲା ତାକୁ ପ୍ରଶଂସା କରିବାରେ ଲାଗିଲେ । ତାହାର ସାହସିକତା ଦେଖି ସେମାନଙ୍କ ମନରେ ଈର୍ଷା-ଜାତ ହେଲା । ପିଲାଯାକ ଭାବିଲେ ଯେ ଟମ୍ ଏବଂ ଯୁ' ଖୁବ୍ ବଡ଼ । ଝିଅମାନେ ମଧ୍ୟ ସେମାନଙ୍କୁ ସେଇ ଦୃଷ୍ଟିରେ ଦେଖିଲେ ।

ଟମ୍ ସଙ୍ଗେ କଥାବାର୍ତ୍ତା ହେବାଲାଗି ବେକର ଖୁବ୍ ଇଚ୍ଛା ହେଉଥାଏ । ମାତ୍ର ଟମ୍ ଆଉ ଆଗର ଟମ୍ ହୋଇ ରହି ନ ଥାଏ । ଅହଂକାରରେ ସେ ନିଜକୁ ଖୁବ୍ ବଡ଼ ବୋଲି ମନେ କରୁଥାଏ । ସେ ଆମି ଲରେନ୍ସକୁ ବେଶୀ ଭଲ ପାଉଥିବାର ଛଳନା କଲା । ତା'ର ହାବ-ଭାବ ଦେଖି ବେକ ଦୁଃଖରେ ଭାଙ୍ଗି ପଡ଼ିଲା । ଏହା ଦେଖି ଟମ୍ ବେଶ୍ ଆନନ୍ଦ ଅନୁଭବ କରୁଥାଏ । ଦିନକର କଥା । ଟମ୍ ମେରି ଅଷ୍ଟିନ୍ ସଙ୍ଗେ କଥାବାର୍ତ୍ତା ହେଉଥାଏ । ଏହି ସମୟରେ ବେକ ଆସି କହିଲା, "ମେରି, ମୁଁ ଗୋଟିଏ ଭୋଜିର ଆୟୋଜନ କରିଛି । ତୁ ଯେପରି ନିଶ୍ଚୟ ଆସିବୁ । ଏହାକୁ ମୋର ନିମନ୍ତ୍ରଣ ବୋଲି ଭାବିବୁ । ମାଆ କହିଛନ୍ତି ଏଥିପାଇଁ ମୁଁ ମୋର ସବୁ ସାଙ୍ଗଙ୍କୁ ନିମନ୍ତ୍ରଣ କରିବି ।" ଏହିସବୁ କଥା କହୁଥିବାବେଳେ ସେ ଟମ୍ ଆଡ଼କୁ ଚାହୁଁଥାଏ । ଟମ୍ ନିଶ୍ଚୟ ତାକୁ କିଛି କହିବ ବୋଲି ତା ମନକୁ ଆଶା ଛୁଉଁଥାଏ । ମାତ୍ର ଟମ୍ ତା ଆଡ଼କୁ ଟିକେହେଲେ ଚାହିଁଲା ନାହିଁ । ସେ ମୁହଁମୋଡ଼ି ଆମି ସଙ୍ଗେ କଥାବାର୍ତ୍ତା ହେବାରେ ଲାଗିଲା । ଟମ୍ ଏବଂ ଆମି ବ୍ୟତୀତ ଅନ୍ୟ ପିଲାମାନେ ବେକର ଭୋଜିରେ ଯୋଗଦେବାକୁ ରାଜି ହେଲେ । ଏଥିପାଇଁ ବେକର ମନରେ ଖୁବ୍ ଦୁଃଖ ହେଲା । ସେ କାନ୍ଦିବାରେ ଲାଗିଲା । କିଛି ସମୟ ପରେ ତାକୁ ଏକ ସୁନ୍ଦର ଉପାୟ ଦେଖାଗଲା । ତା ଲୁହର ଝର ଅଟକିଲା । ନାଲି ଓଠ ତଳେ ମୃଦୁ ହସ ଦେଖାଦେଲା ।

ଆଲ୍‌ଫ୍ରେଡ୍ ଟେମ୍ପଲ୍ ନାମକ ଅନ୍ୟ ଜଣେ ପିଲା ସାଙ୍ଗରେ ବେକ ବସିଥାଏ । ଦୁହେଁଯାକ ସାଙ୍ଗ ହୋଇ ଗୋଟିଏ ଛବି ବହି ଓଲଟପାଲଟ କରିବାରେ ଲାଗିଥାନ୍ତି । ଛବି ଦେଖି ଥରେ ସେମାନେ ଖୁବ୍ ଜୋରରେ ହସି ଉଠିଲେ । ସେମାନଙ୍କର ହସ ଶୁଣି ଟମ୍‌ର ମନରେ ଈର୍ଷାଜାତ ହେଲା । ସେ ଆଉ ଆମି ସହିତ କଥାବାର୍ତ୍ତା

ହେବାକୁ ଇଚ୍ଛା କଲ ନାହିଁ । ତାକୁ ଛାଡ଼ି ସେ ଘରକୁ ଚାଲିଗଲା ।
ଆଲ୍‌ଫ୍ରେଡ୍ ଟେମ୍ପଲ୍ ପ୍ରତି ତାହାର ମନରେ ଘୃଣାଜାତ ହେଲା ।
ତାହାର ସୁନ୍ଦର ପୋଷାକ କଥା ଭାବି ସେ ରାଗରେ ଜଳିଗଲା ।

ଟମ୍ ଚାଲିଯିବା ପରେ ଛବିବହି ଦେଖିବାରେ ବେକିର ଆଗ୍ରହ
ତୁଟିଲା । ବିଚରା ଆଲ୍‌ଫ୍ରେଡ୍ ପାଖରେ ବସିବା ପାଇଁ ତାର ଆଉ
ମନ ବଳିଲା ନାହିଁ । ସେ ତାକୁ ପାଟି କରି କହିଲା, "ଯାଃ, ଯାଃ !
ମୋତେ ଆଉ ତୋ ପାଖରେ ବସିବାକୁ ଇଚ୍ଛା ହେଉ ନାହିଁ ।"
ହଠାତ୍ ବେକିର ଏଭଳି ପରିବର୍ତ୍ତନ ଦେଖି ଓ ତା ମୁହଁର କର୍କଶ
କଥା ଶୁଣି ଅବାକ୍ ହେଲା ଆଲ୍‌ଫ୍ରେଡ୍ । ଏହାର କାରଣ ସେ ଭଲ
ରୂପେ ବୁଝି ପାରିଲା । ମନେ ମନେ ସେ ଟମ୍‌କୁ ଘୃଣା କଲା । ତାକୁ
ଥରେ ଭଲ ରକମ ଛେଚିବାଲାଗି ତାହାର ଇଚ୍ଛା ହେଲା । କିନ୍ତୁ ସେ
ତାହା କରିବ କିପରି ?

ଆଲ୍‌ଫ୍ରେଡ୍ ତାହାର କ୍ଲାସ୍‌କୁ ଗଲା । ଟମ୍‌ର ବନାନ-ଖାତାଟା
ଡେସ୍କ ଉପରେ ପଡ଼ିଥାଏ । ତା ପରବର୍ତ୍ତୀ କ୍ଲାସ୍‌ର ପାଠ ଖାତାର
ଯେଉଁ ଜାଗାରେ ଲେଖାଯିବାର କଥା ସେ ଖାତାର ସେଇ ଅଂଶଟି
ଖୋଲି ଡେସ୍କ ଉପରେ ରଖିଲା । ତା ପରେ କିଛି କାଳି ନେଇ
ସେଇ ଅଂଶଟିରେ ସବୁଆଡ଼େ ଢାଳିଦେଲା । ନିଜକୁ ନିଜେ କହିଲା,
"ଥୋମାସ୍ ସୟାର୍, ଏଇଥର ତୁ ଉଚିତ୍ ଶିକ୍ଷା ପାଇଯିବୁ ।
ମିଃ ଡବିନ୍‌ସ ଯେତେବେଳେ ଖାତା ଦେଖିବେ, ସେତେବେଳେ
ନିଶ୍ଚୟ ମାଡ଼ ବସାଇବେ । ଆଉ ସେଇ ଦୃଶ୍ୟ ମୋ ପକ୍ଷରେ ଖୁବ୍
ଆନନ୍ଦଦାୟକ ହେବ !" ଆଲ୍‌ଫ୍ରେଡ୍ କାଳି ଢାଳୁଥିବା ବେଳେ
ବେକି ଝରକାବାଟେ ସବୁ ଦେଖୁଥାଏ । ଊଁ ଚୁଁ କିଛି ନ କହି
ଭାବୁଥାଏ, "ମୁଁ ଟମ୍ ସୟାରକୁ ଘୃଣା କରେ । ବସିଥିବା ଯାକେ

ତାଙ୍କୁ ଆଦର କରିପାରିବ ନି । ମିଃ ଡବନ୍‌ସ ତାଙ୍କୁ ଯେତେ ପିଟିବେ ପିଟନ୍ତୁ । ସେ ମାଡ଼ ଖାଇଲେ ମୁଁ ଖୁବ୍ ଖୁସି ହେବି ।



ଘରକୁ ଯାଇ ଟମ୍ ଦେଖେ ତ ତାହାର ମାଉସୀ ରାଗରେ ଜଳୁଛନ୍ତି ।

ପଚାରିଲା, "ମାଉସୀ, ଏତେ ରାଗୁଛ କାହାକୁ ?"

"ସେଇ ତୋହରି ସ୍ୱପ୍ନ କଥା । ମୁଁ ଯେତେବେଳେ ମିସେସ୍ ହାର୍‌ପାର୍‌ଙ୍କ ଆଗରେ ସବୁକଥା କହିଗଲି ସେ ହସି ହସି ଗଡ଼ି-ଗଲେ । କଥା କ'ଣ ନା ସେ'ଟା ଆଦୌ ସ୍ୱପ୍ନ ନୁହେଁ—ସତକଥା । କହିଲୁ ଦେଖି ଟମ୍, ଏହା କଣ ମିଛ ? ମୁଁ' ପାଖରୁ ତାହାର

ସବୁ ଶୁଣିଛନ୍ତି । ସେଦିନ ରାତିରେ ତୁ କୁଆଡ଼େ ପ୍ରକୃତରେ ଏଠାକୁ ଆସିଥିଲୁ । ତୁ ମୋତେ ବୋକା ବନାଇ ଦେଇଥିବାରୁ ମିସେସ୍ ହାର୍‌ପାର୍ ଆଜ ମୋତେ ହସରେ ଉଡ଼ାଇ ଦେଇ ପାରିଲେ । ଏଥିପାଇଁ ତୋତେ ଦୋଷୀ ନ କରିବ ତ କରିବ କାହାକୁ !”

ବିଚାରୀ ପୋଲି ମାଉସୀ କାନ୍ଦିବାରେ ଲାଗିଲେ । ଦୁଃଖ ଏବଂ ଲଜ୍ୟାରେ ଟମ୍ ସଡ଼ିଗଲା ।

“ମାଉସୀ, ଏହା ପ୍ରକୃତରେ ସ୍ୱପ୍ନର କଥା ନୁହେଁ । ସେଦିନ ରାତିରେ ମୁଁ ଏକେ ଏଠାକୁ ଆସିଥିଲି । ମୁଁ ଯେ ନ ମରି ବଞ୍ଚିଛି ତୁମକୁ ସେତିକି ଜଣାଇଦେବା ମୋ ଆସିବାର ଉଦ୍ଦେଶ୍ୟ ଥିଲା । ତୁମକୁ ଦୁଃଖ ଦେବାର ଅସଦିଚ୍ଛା ମୋ ମନରେ ଆଦୌ ନ ଥିଲା । ମାଉସୀ, ମୁଁ ସେଥିପାଇଁ ଖୁବ୍ ଦୁଃଖିତ ।”

“ଟମ୍, ତୁ ଯାହା କହିଲୁ, ତାହା କଣ ସତ ?”

“ହଁ, ମାଉସୀ ତାହା ନିରାଟ ସତ !”

“ତୁ କଣ ମୋତେ ପ୍ରକୃତରେ ଚୁମ୍ବନ ଦେଇଥିଲୁ, ଟମ୍ ?”

“ହଁ, ମାଉସୀ, ମୁଁ ପ୍ରକୃତରେ ସେ କାମ କରିଥିଲି । ତୁମ ପ୍ରତି ଥିବା ଅକୃତ୍ରିମ ଶ୍ରଦ୍ଧାର ଆବେଗ ଅଟକାଇ ପାରିଲି ନ ।”

ପୋଲି ମାଉସୀଙ୍କର ମୁଖମଣ୍ଡଳରୁ ବିଷାଦର ଛାଇ ଲୁଚିଗଲା । ଏକ ଅଜଣା ଆନନ୍ଦର ଉଚ୍ଛ୍ୱାସରେ ଉଜ୍ଜ୍ୱଳ ଉଠିଲା ତାଙ୍କର ମୁହଁ ।

## ଟମ୍‌ର ଅଡୁଆ ବଢିଲା

ପୋଲି ମାଉସୀଙ୍କ ମନର ଗ୍ଲାନି ତୁଟିଲା । ଟମ୍ ଖୁସି ହେଲା । ମନ ଆନନ୍ଦରେ ସ୍କୁଲକୁ ଫେରିଲା । ଫେରିବା ରାସ୍ତାରେ ବେକି

ସହିତ ଦେଖା ହେଲା । କହିଲା, "ବେକ, ଆଜ ସକାଳର ଘଟଣାକୁ ନେଇ ମୁଁ ଦୁଃଖିତ । ମୋର ବିଶ୍ୱାସ, ତୁ କେବେହେଲେ ରାଗି ନ ଥିବୁ ।" ବେକ ତା ଆଡ଼େ ଚାହିଁଲା ଅତି ଉଦାସ ଭାବରେ । କହିଲା, "ମିଃ ଥୋମାସ୍ ସ୍ୟାର୍, ମୋ ସହିତ କଥାବାର୍ତ୍ତା ହେବା ଦରକାର ନାହିଁ । ମୁଁ ଆଉ କେବେହେଲେ ତୁମ ସହିତ କଥାବାର୍ତ୍ତା ହେବାକୁ ଚାହୁଁ ନାହିଁ ।"

ବେକର କଥା ଶୁଣି ଟମ୍‌ର ସର୍ବାଙ୍ଗ ଜଳିଗଲା ରାଗରେ । ଅତି ଟାଣୁଆ ସ୍ୱରରେ ସେ ତା କଥାର ଜବାବ ଦେଲା ।

ବେକ ମନେ ମନେ ଭାବୁଥାଏ, "ବନାନ ପିଲଅଡ଼ ଆସିବା ପର୍ଯ୍ୟନ୍ତ ଯେତେ ଗର୍ଜନ କରିବୁ କରୁଥା । ମିଃ ଡବିନ୍‌ସଙ୍କ ଆଖିରେ ଥରେ ତୋ ଖାତାର ଅବସ୍ଥାଟା ପଡ଼ିଗଲେ ଏ ଗର୍ଜନ ଆଉ ନ ଥିବ ।"

ଏହାପରେ ବେକ ନିଜେ ଅସୁବିଧାରେ ପଡ଼ିଗଲା । ମିଃ ଡବିନ୍‌ସ ତାଙ୍କ ଡେସ୍କରେ ଗୋଟିଏ ବହି ରଖିଥାନ୍ତି । କ୍ଲାସ୍‌ର ପିଲମାନେ ସେମାନଙ୍କର କାମରେ ଲଗିଥିବାବେଳେ ସେ ଡେସ୍କ ଭିତରୁ ତାଙ୍କ ବହିଟି ବାହାର କରି ପଢିବାରେ ଲଗନ୍ତି ।

ସେ ବହିଟିର ନାମ କ'ଣ ସେକଥା କୌଣସି ପିଲା ଜାଣି ନ ଥାଏ । ସେଥିପାଇଁ ବହିଟି ଦେଖିବାଲାଗି ପ୍ରତ୍ୟେକଙ୍କ ମନରେ ଖୁବ୍ କୌତୁହଳ ଥାଏ । ମାତ୍ର ମିଃ ଡବିନ୍‌ସ ବହିଟି ସବୁବେଳେ ଡେସ୍କ ଭିତରେ ତାଲା ମାରି ରଖୁଥିବାରୁ କେହି କେବେ ତାହା ଦେଖିବାର ସୁବିଧା ପାଏ ନାହିଁ । ସେଦିନ ଉପରଓଳି ସେଇ ଡେସ୍କ ଅତିକ୍ରମ କରି ଯିବାବେଳେ ବେକ ଦେଖିଲା ଯେ ତାଲାରେ ଚାବି-କାଠିଟା ଲଗି ରହିଛି । ସେତେବେଳେ ତା ଭିନ୍ନ ଆଉ କେହି କ୍ଲାସ୍‌ରେ ନ ଥାନ୍ତି । ତରତର ହୋଇ ସେ ତାଲା ଖୋଲି ବହିଟି

ବାହାର କରି ଆଣିଲା । ଦେଖିଲା ଯେ ବହିର ନାମ ହେଉଛି "ଆଧୁନିକ ଔଷଧ" । ସେ ବହିଟି ଦେଖୁଥିବାବେଳେ ଜଣେ କେହି କୋଠରି ଭିତରକୁ ଆସିବାର ଶବ୍ଦ ତା କାନରେ ବାଜିଲା । ଆଖି ଉଠାଇ ଚାହିଁଲା । ଦେଖିଲା, ଆଗରେ ଛିଡ଼ା ହୋଇଛି ଟମ୍ ସଏ୍ୟାର । ଗୁନିଆରେ ବହିଟି ବନ୍ଦ କରୁ କରୁ କ୍ରୋଧରେ ସେ ହତଜ୍ଞାନ ହୋଇ ପଡ଼ିଲା । ଉପସ୍ଥିତ ବିପଦରୁ କିପରି ରକ୍ଷା ମିଳିବ ସେକଥା ଜାଣି-ପାରିଲା ନାହିଁ । ତା ଆଖିରୁ ଧାର ଧାର ଲୁହ ଗଡ଼ିବାରେ ଲଗିଲା ।

"ତୁମେ ନିଶ୍ଚୟ ମିଃ ଡବନ୍‌ସଙ୍କୁ ଏ କଥା କହିଦେବ । ମୁଁ ଜାଣେ ତୁମେ କେବେହେଲେ ନ କହି ରହି ପାରିବନି । ତାପରେ ମୋ ଉପରେ ବର୍ଷିବ ମାଡ଼ । ଟମ୍ ସଏ୍ୟାର, ସେଥିପାଇଁ ମୁଁ ତୁମକୁ ଘୃଣା କରେ ।" ଏହା କହିସାରି ବେକି ଆଖିବୁଜି ଦୌଡ଼ି ପଳାଇଲା କ୍ଲାସ୍ ବାହାରକୁ ।

ନିଜକୁ ନିଜେ ପଚାରିଲା ଟମ୍, "ତାର କ'ଣ ହେଲା ? ମୁଁ ଅବଶ୍ୟ କିଛି କହିବିନି । କିନ୍ତୁ ମିଃ ଡବନ୍‌ସ ଯେପରି ହେଉ କଥାଟା ବାହାର କରି ପକାଇବେ । ତାପରେ ସେ ନିଶ୍ଚୟ ବେକିକୁ ଦଣ୍ଡ ଦେବେ । ତାହା ଦେଖି ମୁଁ କଣ ଖୁସି ହୋଇପାରିବ !"

କ୍ଲାସ୍‌ରେ ବନାନ ପରୀକ୍ଷା ଆରମ୍ଭ ହେଲା । ପିଲାମାନେ ଯେ ଯାହାର ଖାତା ବାହାର କଲେ । ସହସା ଟମ୍ ଖାତାର କାଳି ପଡ଼ିଥିବା ଜାଗାଟା ମିଃ ଡବନ୍‌ସଙ୍କର ଦୃଷ୍ଟି ଆକର୍ଷଣ କଲା । ଛାଟି କରି ଟମ୍ କହିଲା, "ମୁଁ ତ ଖାତାରେ କାଳି ପକାଇ ନାହିଁ । ଏହା ମୋର ଦୋଷ ନୁହେଁ ।" ଶିକ୍ଷକ ମହାଶୟ ତା କଥା କିଛି ଶୁଣିଲେ ନାହିଁ । ସବୁ ପିଲାଙ୍କ ଆଗରେ ସେ ଟମ୍‌କୁ ମାଡ଼ ଦେଲେ । ସେ ଦୃଶ୍ୟ ଦେଖି ବେକିକୁ ଖୁବ୍ ଖରାପ ଲଗିଲା । ନିଜକୁ ନିଜେ

ପଗ୍ଭରିଲା, "ମିଃ ଡବନ୍‌ସଙ୍କ ଆଗରେ ଆଲ୍‌ଫ୍ରେଡ୍ କଥା କହିଦେବି କି ? ନା, କିଛି କହିବି ନାହିଁ । ମିଃ ଡବନ୍‌ସଙ୍କର ବହି ଚିରି ମୁଁ ଚିରି ଦେଇଥିବା କଥା ଟମ୍ ନିଶ୍ଚୟ କହିଦେବ । ଏକଥା ମୁଁ ଭଲଭାବରେ ଜାଣିଛି । ତେଣୁ ଆଲ୍‌ଫ୍ରେଡ୍ ତା ଖାତାରେ କାଳି ଢାଳିବା କଥା ମୁଁ କହିବି କାହିଁକି ?"

ପିଲାମାନେ ଧୀରସ୍ଥିର ଭାବରେ ବସି ନିଜ ନିଜ କାମରେ ଲାଗିଥାନ୍ତି । ମିଃ ଡବନ୍‌ସ ତାଙ୍କ ବହିଟି ବାହାର କରି ପଢ଼ିବାକୁ ଲାଗିଲେ । ବେକି ତାଙ୍କୁ ଲକ୍ଷ୍ୟ କରୁଥାଏ । ଚିରା ପୃଷ୍ଠାଟି କେତେବେଳେ ତାଙ୍କ ଆଖିରେ ପଡ଼ିବ ସେକଥା ଭାବି ସେ ଶଙ୍କିତ ହୋଇ ପଡୁଥାଏ । ଟମ୍ ନଜର ରଖିଥାଏ ବେକି ଉପରେ । ଭାବୁଥାଏ, "ହାୟ ! ହାୟ ! ବିଚାରୀ ବେକି ! ସେ କେଡ଼େ ଡରକୁଳୀ !" ନିମିଷକ ମଧ୍ୟରେ ତା ମନର ରାଗ କେଉଁଆଡ଼େ ଉଭେଇଗଲା । ପୃଷ୍ଠାଏ କି ଦୁଇପୃଷ୍ଠା ଖୋଲିବା ପରେ ହଠାତ୍ ରାଗ ଜର୍ଜ୍ଜରିତ ହୋଇ ଶିକ୍ଷକ ମହାଶୟ ଆଖି ଟେକି ଚାହିଁଲେ । ଗର୍ଜନ କରି କହିଲେ, "ଏ କାମ କିଏ କରିଛି ?" ସେ ଚିରାପୃଷ୍ଠାଟି ସବୁ ପିଲାଙ୍କୁ ଦେଖାଇଲେ । କାହାରି ମୁହଁରୁ ପଦେହେଲେ କଥା ବାହାରିଲା ନାହିଁ । ପ୍ରତ୍ୟେକ ପିଲା ନିଜ ନିଜ ଜାଗାରେ ବସି ଥରିବାରେ ଲାଗି ଥାଆନ୍ତି ।

"ଯୋସେଫ୍ ହାର୍‌ପାର୍, ତୁ ଏ ବହି ଚିରିଛୁ ?"

"ନା, ସାର୍ !"

"ବେଞ୍ଜାମିନ୍ ରୋଜାର, ତୁ— ?"

"ନା, ସାର୍ !"

"ଆଲ୍‌ଫ୍ରେଡ୍ ଟେମ୍ପଲ୍, ତୁ ଏ କାମ କରିଛୁ ?"

"ମୁଁ ! ନା, ସାର୍ ।"

ଏହାପରେ ମିଃ ଡବନ୍ସ ଝିଅମାନଙ୍କୁ ପଚାରିବା ଆରମ୍ଭ କଲେ । ଜଣ ଜଣ କରି ପଚାରୁଥାନ୍ତି । ଅଥଚ 'ନା' ଛଡ଼ା ଜଣେ-ହେଲେ କେହି 'ହଁ' ବୋଲି କହୁ ନ ଥାଏ । ଶେଷରେ ଯାଇ ପହଞ୍ଚିଲେ ରବେକା ଥେଚର ପାଖରେ । ପଚାରିଲେ, "ସତ କହିଲୁ ଦେଖି, ତୁ କ'ଣ ଏହା ଚିରି ନାହୁଁ ?"

ସଙ୍ଗେ ସଙ୍ଗେ ବେକିର ସମସ୍ତ ମୁଖମଣ୍ଡଳ କପରି ବିବର୍ଣ୍ଣ ଦେଖାଗଲା । ଯେପରି କିଏ ସେହି ମୁଖମଣ୍ଡଳରୁ ସବୁଯାକ ରକ୍ତ ଶୋଷି ନେଇଗଲା ଘଡ଼ିକ ଭିତରେ । ଉତ୍ତର ଦେବା ପାଇଁ ସେ ମୁଣ୍ଡ ଟେକି ପାରିଲା ନା । ସେ ଦୋଷ କରିଛି ବୋଲି ତା ଚେହେରା ଦେଖିଲେ ଜଣାପଡ଼ୁଥାଏ । ମିଃ ଡବନ୍ସ ପରିଷ୍କାର ଭାବରେ ଜାଣିପାରିଲେ ଯେ ତା ଛଡ଼ା ଆଉ କେହି ବହି ଚିରି ନାହିଁ । ଠିକ୍ ସେହି ସମୟରେ ଟମ୍ ଛିଡ଼ା ହୋଇ କହିଲା, "ସାର୍, ସେ କାମ ବେକି କରି ନାହିଁ । ଭୁଲ୍‌କ୍ରମେ ମୁଁ ବହିଟି ଚିରି ଦେଇଛି ।"

ମିଃ ଡବନ୍ସ କହିଲେ, "ଥୋମାସ୍ ସୟାର୍, ମୋ ପାଖକୁ ଆ !" ଟମ୍ କ୍ଲାସ୍‌ର ସାମ୍ନାକୁ ଗଲା । ବେକିର ଡେସ୍କ ପାରି ହୋଇ ଯିବାବେଳେ ସେ ତା ଆଡ଼କୁ ଚାହୁଁଥାଏ । ସେ ଖୁସି ଥିବାରୁ ତାହାର ଆଖିଯୋଡ଼ିକ ବେଶ୍ ଉଜ୍ଜ୍ୱଳ ଦେଖାଯାଉଥାଏ । ଟମ୍ ମନେ ମନେ ଭାବିଲା, "ବର୍ତ୍ତମାନ ସେ ନିଶ୍ଚୟ ମୋତେ ଭଲ ପାଉଥିବ ।" ମିଃ ଡବନ୍ସ ତାକୁ ଖୁବ୍ ବାଡ଼େଇଲେ । ମାତ୍ର ମନର ପ୍ରଫୁଲ୍ଲତା ଦେହ-ଦୁଃଖ ସହିବାରେ ତାକୁ ସାହାଯ୍ୟ କଲା । ବାଡ଼େଇ ସାରିବାପରେ ମିଃ ଡବନ୍ସ କହିଲେ, "ସ୍କୁଲ୍ ଛୁଟି ହୋଇଯିବା ପରେ ତୋତେ ଆଉ ଦୁଇଘଣ୍ଟା ପାଇଁ ଏଠାରେ ଅଟକି ରହିବାକୁ ପଡ଼ିବ ।" ଏ ପ୍ରକାର ଦଣ୍ଡ ମଧ୍ୟ ଟମ୍‌ର ମନରେ କୌଣସି ପ୍ରକାର

କଷ୍ଟ ଦେଲ ନାହିଁ । ସେ ଭାବିଲା, "ମୁଁ ଅଟକ ରହିଲେ ବେକି ନିଶ୍ଚୟ ମୋତେ ଅପେକ୍ଷା କରି ଏଠାରେ ପଡ଼ି ରହିବ ।"

ବେକି ପ୍ରକୃତରେ ତାକୁ ଅପେକ୍ଷା କରି ସ୍କୁଲ ବାହାରେ ଛିଡ଼ା ହୋଇଥାଏ । ଦୁଇଘଣ୍ଟା ପରେ ଟମ୍ ବାହାରକୁ ଆସିଲା । ତାକୁ ଦେଖି ବେକି କହିଲା, "ଟମ୍, ତୁମେ ବାସ୍ତବିକ ଆଶ୍ଚର୍ଯ୍ୟ । ତୁମ-ଠାରୁ ଅଧିକ ସୁନ୍ଦର ପିଲା ଆଉ ଜଣେ କେହି ଏ ଜଗତରେ ଥାଇପାରେ ବୋଲି ମୋର ବିଶ୍ୱାସ ହେଉ ନାହିଁ । ତୁମେ କେତେ ମହତ ।"

# ପୁରସ୍କାର ବିତରଣୀ

ଶିକ୍ଷା-ବର୍ଷ ଶେଷ ହୋଇ ଆସୁଥାଏ । ଆଗରେ ପରୀକ୍ଷା । ମିଃ ଡବନ୍‌ସ ପିଲାମାନଙ୍କୁ କଠିନ ପରିଶ୍ରମ କରାଉଥାନ୍ତି । ପରିଶ୍ରମ କରୁ ନ ଥିବା ପିଲାଙ୍କ ଉପରେ ନିର୍ଘାତ ମାଡ଼ ବସୁଥାଏ । ଏଥିପାଇଁ ପିଲାମାନଙ୍କର ରାଗ ବଢ଼ୁଥାଏ । ଗୋଟିଏ ଦିନର କଥା । ସେମାନେ ସମସ୍ତେ ଏକାଠି ହୋଇ ଗୋଟିଏ ଉପାୟ ପାଞ୍ଚିଲେ । ମିଃ ଡବନ୍‌ସଙ୍କ ମୁଣ୍ଡରେ ବାଳ ନ ଥାଏ । ତେଣୁ ସେ ସବୁବେଳେ ଏକ ପ୍ରକାର କୃତ୍ରିମ ବାଳ ମୁଣ୍ଡରେ ଲଗାନ୍ତି । ତାଙ୍କ ମୁଣ୍ଡଟାକୁ ସୁନେଲି ରଙ୍ଗରେ ରଙ୍ଗାଇ ଦେବାର ଯୋଜନା କରାଗଲା । ସେମାନଙ୍କ ଭିତରେ ଜଣେ ଚିତ୍ରଶିଳ୍ପୀର ପୁଅ ଥାଏ । ସେ ଏହି କାମ କରିବ ବୋଲି ପ୍ରତିଜ୍ଞା କଲା । ମିଃ ଡବନ୍‌ସ ସେଇ ଚିତ୍ରଶିଳ୍ପୀଙ୍କ ଘରେ ରହୁଥାନ୍ତି । ମଧ୍ୟାହ୍ନଭୋଜନ ସାରି ସେ ଶୋଇଥିବାବେଳେ ରଙ୍ଗବୋଳା କାମ କରିବ ବୋଲି ଚିତ୍ରଶିଳ୍ପୀର ପୁଅ ମନେ ମନେ

ସ୍ଥିର କରିଥାଏ । ସେ କ୍ଲାସ୍‌ର ସବୁ ପିଲଙ୍କୁ କଥା ଦେଇଥାଏ ଯେ ପୁରସ୍କାର ବିତରଣୀ ଦିନ ସମସ୍ତେ ମିଃ ଡବିନ୍‌ସଙ୍କର ଲଲମୁଣ୍ଡ ଦେଖିବାକୁ ପାଇବେ ।

ପୁରସ୍କାର ବିତରଣୀ ଦିନ ପହଞ୍ଚିଲା । ସ୍କୁଲର ଗୋଟିଏ ଲମ୍ବା କୋଠରି ଭିତରେ ସବୁ ପିଲା ଧୀର-ସ୍ଥିର ଭାବରେ ବସିଥାନ୍ତି । ସମସ୍ତେ ଭଲ ଭଲ ପୋଷାକ ପିନ୍ଧି ଆସିଥାନ୍ତି । ସବୁରି ମୁହଁରେ ହସର ଲହଡ଼ି ଭାଙ୍ଗୁଥାଏ । ସୁନ୍ଦର ସଯତ ଭାବରେ ସମସ୍ତେ ମୁଣ୍ଡ କୁଣ୍ଡାଇଥାନ୍ତି । ପୁରସ୍କାର ବିତରଣୀ ଉତ୍ସବ ଦେଖିବୁ ପିଲାଙ୍କର ଅଭିଭାବକମାନେ ଆସିଥାନ୍ତି । ଗ୍ରାମବାସୀମାନେ ମଧ୍ୟ ଉପସ୍ଥିତ ଥାନ୍ତି । ପ୍ରଥମେ ବାଳକ-ବାଳିକାମାନେ ପଦ୍ୟାବୃତ୍ତି କଲେ । ଟମ୍ ଗୋଟିଏ ପଦ୍ୟ ଆବୃତ୍ତି କରିବା ପାଇଁ ମଞ୍ଚ ଉପରକୁ ଗଲା । ସମସ୍ତଙ୍କ ଆଗରେ ଛିଡ଼ା ହୋଇ ପଦ୍ୟଟିଏ ଆବୃତ୍ତି କରି ସେ ହଠାତ୍ ଚୁପ୍ ହୋଇଗଲା । ପରବର୍ତ୍ତୀ ଧାଡ଼ିଗୁଡ଼ିକ ତାର ମନେ-ପଡ଼ିଲା ନାହିଁ । ଗୁରିପାଖ ଗୁହିଁଲା ଅସହାୟ ଭାବରେ । ଦେଖିଲା, ମିଃ ଡବିନ୍‌ସଙ୍କ ମୁହଁ ରାଗରେ ଲାଲ ପଡ଼ିଯାଇଛି । ପଦ୍ୟର ଆଉ ଗୋଟିଏ ସୁଦ୍ଧା ଧାଡ଼ି ତା'ର ମନେପଡ଼ୁ ନ ଥାଏ । କପଟ ଓଲୁ ପରି ସେ ଛିଡ଼ା ହୋଇଥାଏ କାଠପିତୁଳା ପରି । ମଞ୍ଚ ଉପରୁ ଦୌଡ଼ି ପଳାଇ ଆସିଲା । ଲଜ୍ୟାରେ ମୁହଁ ରଙ୍ଗା ପଡ଼ି ଯାଇଥାଏ ।

ପଦ୍ୟାବୃତ୍ତି ପରେ ମିଃ ଡବିନ୍‌ସ କଳାପଟା ପାଖକୁ ଗଲେ ଏବଂ କଳାପଟା ଉପରେ ଆମେରିକା ମହାଦେଶର ଚିତ୍ରାଙ୍କନ କଲେ । ସେହି ମହାଦେଶ ଉପରେ ସେ କେତେଗୁଡ଼ିଏ ଭୌଗୋଳିକ ପ୍ରଶ୍ନ ପଚାରିବାକୁ ବସିଛନ୍ତି ଏହିପରି ସମୟରେ କେଉଁଆଡ଼େ ଥିଲା ହଠାତ୍ ଗୋଟିଏ ବିରାଡ଼ି ତାଙ୍କ ମୁଣ୍ଡର ଅଳ୍ପ ଉପରକୁ ଦେଖା-ଦେଲା ! ଗୋଟିଏ ଲମ୍ବା ରସିକୁ ଆଶ୍ରୟ କରି ବିରାଡ଼ିଟି ତଳକୁ

ତଳକୁ ଖସିବାରେ ଲାଗିଥାଏ । ସେଇ କୋଠରର ଉପରେ ରହି ଜଣେ କେହି ପିଲା ରସିଟି ଧରିଥାଏ । ବଗୁଡ଼ର ମୁହଁକୁ ଖଣ୍ଡେ କନା ଦ୍ୱାରା ବାନ୍ଧି ଦିଆଯାଇଥାଏ । କ୍ରମେ କ୍ରମେ ବଗୁଡ଼ଟି ଶିକ୍ଷକଙ୍କ ମୁଣ୍ଡର ଖୁବ୍ ନିକଟବର୍ତ୍ତୀ ହେଲା ଏବଂ ତାଙ୍କ ମୁଣ୍ଡରେ ଥିବା କୃତ୍ରିମ ଚୁଳ ଲଗା ଟୋପିଟି ଟାଣି ନେଲା । ଏହାପରେ ବଗୁଡ଼ଟିକୁ ଟାଣି ନିଆଗଲା ଉପରକୁ । ବର୍ତ୍ତମାନ ସମସ୍ତଙ୍କ ଦୃଷ୍ଟି ଯାଇ ପଡ଼ି ହୋଇଥାଏ ମିଃ ଡବିନ୍‌ସଙ୍କ ମୁଣ୍ଡ ଉପରେ । ଚିତ୍ରଶିଳ୍ପୀର ପୁଅ ତାହାର କାମ ଭଲ ଭାବରେ କରିଥାଏ । ତାଙ୍କର ଚିକ୍‌କଣ ମୁଣ୍ଡ ଉପରେ ସୁନେଲି ରଙ୍ଗ ବୋଳା ଯାଇଥାଏ । ସୂର୍ଯ୍ୟଙ୍କ ଦେହରୁ କିରଣ ବାହାରିଲା ପରି ତାଙ୍କର ଚନ୍ଦା ମୁଣ୍ଡଟାରୁ ଉଜ୍ଜ୍ୱଳ କିରଣ ବାହାରୁଥାଏ । ପିଲାମାନେ ବଡ଼ ପାଟିରେ ହସି ଉଠିଲେ । ଅଭିଭାବକ ଏବଂ ଉପସ୍ଥିତ ଗ୍ରାମବାସୀମାନଙ୍କ ମଧ୍ୟରେ ହସର ରୋଳ ଉଠିଲା । ଶୁଖିଲା ମୁହଁରେ ଛିଡ଼ା ହୋଇଥିଲେ ଏକା ମିଃ ଡବିନ୍‌ସ !

## ମାଫ ପୋଷ୍ଟରର ବଗୁର

ପୁରସ୍କାର ବିତରଣୀ ପରେ ଗ୍ରୀଷ୍ମାବକାଶରେ ସ୍କୁଲ ବନ୍ଦ ହେଲା । ଟମ୍ ଏବଂ ଗାଁର ସବୁଥାକ ପିଲାଙ୍କୁ କଷ୍ଟରୁ ମୁକ୍ତି ମିଳିଲା । ବର୍ତ୍ତମାନ କଷ୍ଟହୀନ ପାଇଁ ସମସ୍ତଙ୍କୁ ମନ ଇଚ୍ଛା ପହଁରିବାର ସୁବିଧା ମିଳିବ । ମାଛ ଧରିବାର ସୁଯୋଗ ଆସିବ । ଯେତେବେଳେ ଯାହା କରିବାକୁ ମନ ହେବ ତାହା କରିବା ପାଇଁ କେହି ବାଧା ଦେବେ ନାହିଁ । ଏପରି ଏକ ଆନନ୍ଦଦାୟକ ସମୟ ପାଇ ମଧ୍ୟ ଟମ୍‌ର ମନ ଭଲ ନ ଥାଏ । ମାଫ୍ ପୋଷ୍ଟର୍‌ର ବଗୁର ସମୟ ନିକଟେଇ ଆସୁ-

ଥିବାରୁ ସେ ଚିନ୍ତିତ ହୋଇ ପଡ଼ୁଥାଏ । ସେଦିନ ମଶାଣି ଭୂଇଁରେ ଯେଉଁ କଥା ନିଜ ଆଖିରେ ଦେଖିଥିଲା ସେକଥା କିଣ ସେ କହି-ଦେବ ? ରେଡ୍ ଯୁ'ଙ୍କୁ ତାର ଡର । ହାକ୍ ମଧ୍ୟ ତାକୁ ଭୟ କରେ ।

ଯୁ । ଭିତରେ ପୋଟର୍ କିଛିଦିନ ଧରି ଜେଲ ଭିତରେ ଥିବାରୁ ଲୋକମାନେ ଏକ ପ୍ରକାର ତା କଥା ଭୁଲି ଯାଇଥିଲେ । ବର୍ତ୍ତମାନ ବିଚାରର ସମୟ ଆସିଯିବାରୁ ସମସ୍ତଙ୍କ ମୁହଁରୁ ପୁଣି ତାହାରି କଥା ଶୁଣିବାକୁ ମିଳିଲା । ସମସ୍ତଙ୍କ ଆଖିରେ ସେ ହେଲା ଦୋଷୀ । ପାପ କଣ ଲୁଚି ରହି ପାରିବ ? ତରତର ହୋଇ ନିଜର ଛୁରୀଟି ପକାଇ ଦେଇ ଆସିଲା ସେଇ ଡାକ୍ତର ପାଖରେ । ସେଇ ସେତିକ ଭୁଲ କରି ନ ଥିଲେ ସତକଥା ଜାଣିବା କାଠିକର ପାଠ ହୋଇଥା'ନ୍ତା । ସମସ୍ତେ ଭାବିଲେ ଯେ ମାଫ୍ ପୋଟର୍ ଭିନ୍ନ ଡାକ୍ତରର ହତ୍ୟାକାରୀ ଆଉ କେହି ନୁହେଁ । କିନ୍ତୁ ପ୍ରକୃତ ହତ୍ୟାକାରୀକୁ ଚିହ୍ନିଥିଲେ ତିନିଜଣ । ସେମାନେ ହେଲେ,— ଟମ୍ ଏବଂ ହାକ୍ ଆଉ ରେଡ୍ ଯୁ' ମଧ୍ୟ ।

ଦିନେ ଟମ୍ ହାକ୍ ସଙ୍ଗେ କଥାବାର୍ତ୍ତା ହେଲା । ତାକୁ ପଚାରିଲା, "ତୁ ରେଡ୍ ଯୁ' ବିଷୟରେ ଅନ୍ୟ କାହାକୁ କିଛି କହିଛୁ କି ?"

"କାହାକୁ କହିବ ! ମୋ ଜୀବନଟା କ'ଣ ମୋତେ ପିତା ଲାଗୁଛି ? ପାଟି ଖୋଲିଲେ ରେଡ୍ ଯୁ' ହାତରେ ଯେ ଜୀବନ ଯିବ ଏକଥା କ'ଣ ମୁଁ ଜାଣେ ନାହିଁ ?"

"ହଁ, ତୋ କଥା ମିଛ ନୁହେଁ ।"

ଟମ୍ ପୁଣି କହିଲା, "ବର୍ତ୍ତମାନ ଯାହା ଦେଖୁଛି, ପୋଟର୍‌ର ବିରୁଦ୍ଧରେ ପ୍ରାୟ ସମସ୍ତେ । ତା' ପାଇଁ କିନ୍ତୁ ମୋର ଖୁବ୍ ଦୁଃଖ ହେଉଛି, ହାକ୍ ।"

ହାକ୍ କହିଲା, "ଟମ୍, ତୁ ମୋ ମନକଥା ଛଡ଼ାଇ ନେଲୁ । ବିଚରା ପୋଟର୍‌ର ଅବସ୍ଥା କଥା ଭାବିଲାବେଳକୁ ମୋ ମନରେ ବି ଖୁବ୍ ଦୁଃଖ ଆସୁଛି ।"

ଟମ୍ କହିଲା, "କହିଲୁ ଦେଖି, ହାକ୍, ପୋଟର୍ ଲୋକଟା କ'ଣ ଖରାପ ? ଏହା ସତ ଯେ ସେ ଖୁବ୍ ମଦ ପିଏ ଏବଂ ନିଶା ଝୁଙ୍କରେ ଭଲ ମନ୍ଦ ଜ୍ଞାନ ହରାଇ ବସେ । ତାହା ବୋଲି ତାକୁ ଖରାପ ଲୋକ ବୋଲି ମୁଁ କେବେହେଲେ କହିପାରିବି ନା ।"

"ଟମ୍, ତୁ ଯାହା କହିଲୁ ଅକ୍ଷରେ ଅକ୍ଷରେ ସତ ।"

"ଯେ କୌଣସି ଉପାୟରେ ତାକୁ ସାହାଯ୍ୟ କରିବା ପାଇଁ ମୋର କାହିଁକି ଖୁବ୍ ଇଚ୍ଛା ହେଉଛି, ହାକ୍..."

"ତୁ କଣ ଭାବୁଛୁ, ମୋର ସେ ଇଚ୍ଛା ହେଉ ନାହିଁ ? ମୋର ବି ସେ ଇଚ୍ଛା ହେଉଛି । କିନ୍ତୁ ଆମେ ସତକଥା କହିଦେଲେ, ରେଡ୍ ଯୁ' କ'ଣ ଆମକୁ ଛାଡ଼ିଦେବ ?

ପିଲା ଦୁଇଜଣ ଅଧିକାଂଶ ସମୟରେ ଜେଲଖାନା ଯା'ନ୍ତି । ଗ୍ରେଟ ଝରକା ଫାଙ୍କ ଦେଇ ସେମାନେ ପୋଟର୍ ସଙ୍ଗେ କଥାବାର୍ତ୍ତା ହୁଅନ୍ତି । ଧୂଆଁ ପିଇବା ପାଇଁ ତା ହାତକୁ ସିଗାରେଟ୍ ବଢ଼ାଇ ଦିଅନ୍ତି । ଖାଇବା ପାଇଁ ତା ହାତରେ ଦୁଇ-ତିନୋଟା ମିଠା ରଖନ୍ତି । ବଗିଚାରେ ଠିକ୍ ଆଗରୁ ଅଶ୍ରୁଳ ଆଖିରେ, ପୋଟର୍ ପିଲା ଦୁହିଁଙ୍କୁ ବହୁତ ଧନ୍ୟବାଦ ଜଣାଇଲା । କହିଲା, "ତୁମେ ଦୁଇଜଣ ମୋର ପ୍ରକୃତ ବନ୍ଧୁ । ତୁମମାନଙ୍କର ବ୍ୟବହାର ଏ ଜୀବନରେ ଭୁଲି ପାରିବି ନା ।"

ପୋଟର୍‌ର ସେଇ କେତେପଦ କଥା ଶୁଣି ଟମ୍‌କୁ ଖୁବ୍ ଖରାପ ଲାଗିଲା । ଦୁଃଖ ଏବଂ ଲଜ୍ୟାରେ ସେ ସରିଗଲା । ତା ଆଖିକି ନିଦ ଆସିଲା ନାହିଁ । କେତେବେଳେ କେମିତି ଶୋଇଗଲେ ଭୟାନକ

ସ୍ୱପ୍ନ ଦେଖେ । ବିଦରେ ଶୋଇ ଏଣୁତେଣୁ କ'ଣ ଗୁଡ଼ାଏ କହେ । ଚିତ୍କାର କରେ । ବିଚାରର ପ୍ରଥମ ଦିନ ଟମ୍ ବିଚାରାଳୟକୁ ଯାଇ-ଥାଏ । ଘରକୁ ଫେରିବାବେଳକୁ ତା ମନ ପୂର୍ବାପେକ୍ଷା ଆହୁରି ବେଶୀ ମଉଳି ଯାଇଥାଏ ଦୁଃଖରେ । ଲେଡ଼୍ ଯୁ'ର କଥାରେ କାହାରି ସନ୍ଦେହ ନ ଥାଏ । ପୋଟର୍‌କୁ ନିଶ୍ଚିତ ରୂପେ ଫାଶୀଦଣ୍ଡ ହେବ ବୋଲି ସମସ୍ତେ ଅନୁମାନ କରୁଥାନ୍ତି । ମାତ୍ର ଟମ୍‌ର ମନ ଦୁର୍ବଳ ହୋଇ ନ ଥାଏ । ସେ ପୋଟର୍‌କୁ କେବେହେଲେ ଫାଶୀ-ଖୁଣ୍ଟରେ ଝୁଲିବାକୁ ଦେବ ନାହିଁ । ଗୋପନୀୟ ଭାବରେ ସେ ପୋଟର୍‌ର ଓକିଲଙ୍କ ପାଖକୁ ଗଲା ଏବଂ ଅପରାଧର ପ୍ରକୃତ ଘଟଣା ତାଙ୍କ ଆଗରେ ବର୍ଣ୍ଣନା କଲା ।

ବିଚାରର ଶେଷଦିନ ପହଞ୍ଚିଲା । କି ଦଣ୍ଡବିଧାନ ହେବ ତାହା ଶୁଣିବାପାଇଁ ଶହ ଶହ ଲୋକ ଜମା ହୋଇଥାନ୍ତି ବିଚାରାଳୟରେ । ବିଚରା ପୋଟର୍‌ର କି ଦୟନୀୟ ଅବସ୍ଥା ! ମୁହଁ କାନରେ ରକ୍ତ ଥିଲା ପରି ଜଣାଯାଉ ନ ଥାଏ । ବିଚାରାଳୟର ଗୋଟିଏ ପାଖରେ ଲେଡ଼୍ ଯୁ' ମଧ୍ୟ ଛିଡ଼ା ହୋଇଥାଏ । ଅଧିକାଂଶ ଲୋକ ପୋଟର୍ ବିରୁଦ୍ଧରେ ବିଭିନ୍ନ ପ୍ରକାର କଥା କହୁଥାନ୍ତି । ଜଣେ କେହି କହୁ-ଥାଏ, "ମୁଁ ପୋଟର୍‌ର ଛୁରୀଟି ଡାକ୍ତରଙ୍କ ପାଖରେ ପଡ଼ିଥିବାର ନିଜ ଆଖିରେ ଦେଖିଛି ।" ପୁଣି ଆଉ କେହି କହୁଥାଏ, "ରକ୍ତ ଲାଗିଥିବା ପୋଷାକଗୁଡ଼ିକ ଧୋଉଥିବା ବେଳେ ,ମୁଁ ନିଜେ ପୋଟର୍‌କୁ ଦେଖିଛି ।" ତାପରେ ଲେଡ଼୍ ଯୁ'ର ପାଳି ଆସିଲା । ସେ ସମସ୍ତ ଘଟଣା ପୁଙ୍ଖାନୁପୁଙ୍ଖରୂପେ ବର୍ଣ୍ଣନା କରିବାରେ ଲାଗିଥାଏ । ତା' କଥାକୁ କେହି ଅବିଶ୍ୱାସ କରୁ ନ ଥାଏ । ସମସ୍ତେ ଦୃଢ଼ଭାବରେ ବିଶ୍ୱାସ କରିଥାନ୍ତି ଯେ ମାଫ୍ ପୋଟର୍ ହିଁ ଡାକ୍ତରଙ୍କର ହତ୍ୟାକାରୀ ଏବଂ ସେଥିପାଇଁ ତାକୁ ଫାଶୀଦଣ୍ଡ ଭୋଗିବାକୁ ପଡ଼ିବ ହିଁ ପଡ଼ିବ ।

ବିଚାରପତିଙ୍କର ରାୟ ଶୁଣିବା ପାଇଁ ସମସ୍ତେ ଉତ୍କଣ୍ଠିତ ହୋଇ ରହିଥାନ୍ତି ।

ଜଣେ କେହି ଆଦେଶ ଦେଲେ, "ଥୋମାସ୍ ସୟାର୍‌କୁ ଡାକ ।" ଉପସ୍ଥିତ ଲୋକମାନେ ବିସ୍ମିତ ହୋଇ ପରସ୍ପର ଆଡ଼କୁ ଚାହିଁବାରେ ଲାଗିଲେ । ଟମ୍ ସୟାର୍ ? ସେ'ଟା ଏହି ଅପରାଧ ସମ୍ପର୍କରେ ଜାଣେ କ'ଣ ?



ବିଚାରପତିଙ୍କ ସାମ୍ନାରେ ଛିଡ଼ା ହୋଇ ଟମ୍ ବିଚାରାଳୟର ଚାରିପାଖ ଚାହିଁଲା । ମନରେ ତା'ର ଆତଙ୍କ ଜାତ ହେଲା । ପ୍ରତ୍ୟେକେ ତାକୁ ଚାହିଁଥାନ୍ତି । ତା ମୁହଁର କଥା ଶୁଣିବା ପାଇଁ ସମସ୍ତେ ଅପେକ୍ଷା କରି ରହିଥାନ୍ତି । କିନ୍ତୁ ସେ ଏତେ ବେଶୀ ଡରି ଯାଇଥାଏ ଯେ ତା ମୁହଁରୁ ପଦେହେଲେ କଥା ବାହାରୁ ନ ଥାଏ ।

ନରମସ୍ୱରରେ ବିଚାରପତି କହିଲେ, "କୌଣସି କଥାକୁ ଭୟ କର ନାହିଁ, ବାଳକ । ତୁମେ ଏଠାରେ ସମ୍ପୂର୍ଣ୍ଣ ନିରାପଦ । ତୁମେ

ଏଇ ଅପରାଧ ସମ୍ପର୍କରେ ଯାହା ଯାହା ଜାଣିଛ ନିଃଶଙ୍କ ଭାବରେ ପ୍ରକାଶ କର । ଏହାପରେ ଓକିଲ ଟମ୍‌କୁ ଅନେକଗୁଡ଼ିଏ ପ୍ରଶ୍ନ ପଚାରିଲେ :

"ତୁମର ନାମ କଣ ଥୋମାସ୍ ସୟାର୍ ?

"ହଁ ସାର୍ ।"

"ଜୁନ୍ ୧୭ ତାରିଖ ରାତିରେ ତୁମେ କେଉଁଠାରେ ଥିଲ ?"

ଟମ୍ ରେଡ୍ ଯୁ'ର ମୁହଁକୁ ଚାହିଁଲା । ମନକୁ ଭୟ ଆସୁଥିଲେ ବି ସାହସ ବାନ୍ଧି କହିଲା, "ସାର୍, ମୁଁ ମଶାଣି ଭୂଇଁରେ ଥିଲି ।"

ଓକିଲ କହିଲେ, "ବଡ଼ ପାଟିରେ କୁହ । ଭୟ କରିବାର କିଛି ନାହିଁ ।"

ବଡ଼ ପାଟିରେ ଟମ୍ ଆଉଥରେ କହିଲା, "ସାର୍, ସେତେ-ବେଳେ ମୁଁ ମଶାଣି ଭୂଇଁରେ ଥିଲି ।"

"ତୁମେ ହର୍ସ ଉଇଲିୟମ୍‌ଙ୍କୁ କବର ଦିଆଯାଇଥିବା ଜାଗାର ନିକଟରେ ଥିଲ କି ?"

"ହଁ, ସାର୍ !"

"କେତେ ନିକଟରେ ଥିଲ ?"

"ସାର୍, ବର୍ତ୍ତମାନ ମୁଁ ଆପଣଙ୍କର ଯେତେ ନିକଟରେ ଅଛି, ସେତେବେଳେ ସେଇ ସେତିକି ନିକଟରେ ଥିଲି ।"

"ତୁମେ ଲୁଚି ରହିଥିଲ କି ?"

"ହଁ ସାର୍ ।"

"କେଉଁଠାରେ ?"

"ସେଇ କବର ପାଖରେ ଥିବା କେତେଗୁଡ଼ିଏ ଗଛ ଆଢୁଆଳରେ ।"

ବର୍ତ୍ତମାନ ସାହସ ଧରି ଟମ୍ ସବୁକଥା ବଡ଼ପାଟିରେ କହୁଥାଏ। ଆଖିତରାଟି ତା ଆଡ଼କୁ ଗୃହିଁ ରହୁଥାଏ ରେଡ୍ ୟୁ’।

“ତୁମେ କ’ଣ ମଶାଣିରେ ଏକୁଟିଆ ଥିଲ ?”

“ନା, ସାର୍। ପାଖରେ ମୋର ଜଣେ ସାଙ୍ଗ ଥାଏ। ତାହାର ନାମ...”

“ତୁମେ ସେଠାରେ ଯାହା ଯାହା ଦେଖିଥିଲ ପରିଷ୍କାର ଭାବରେ କହିଯାଅ।”

ବିଚାରାଳୟରେ ପୂର୍ଣ୍ଣ ନୀରବତା ରାଜତ୍ୱ କରୁଥାଏ। ନିଚ୍ଛକ ସତ ବିବରଣୀ ଦ୍ୱାରା ସେ ସମସ୍ତଙ୍କ ଆଗରେ ଅପରାଧର ଏକ ଜୀବନ୍ତ ଛବି ଆଙ୍କି ଦେଇପାରିଲା। ଶେଷରେ କହିଲା, “ସାର୍, ଅପରାଧୀ ହେଉଛି ରେଡ୍ ୟୁ’। ମାଫ୍ ପୋଟର୍ ନୁହେଁ। ଡାକ୍ତରଙ୍କୁ ଛୁରୀ ଭୁଷି ହତ୍ୟା କରିଛି ଏଇ ରେଡ୍ ୟୁ’।”

ଏକ ଅଜଣା ଆତଙ୍କର ତଡ଼ିତ୍ ପ୍ରବାହ କ୍ଷଣିକ ଭିତରେ ସଞ୍ଚାରିତ ହେଲା ରେଡ୍ ୟୁ’ର ସର୍ବାଙ୍ଗରେ। ସେ ଡିଆଁମାରି ଦୌଡ଼ିଲା ପାଖରେ ଥିବା ଝରକା ପାଖକୁ। କେତେକ ଲୋକ ତାକୁ ପଛରୁ ଧରି ରଖିବାର ଚେଷ୍ଟା କଲେ। ମାତ୍ର ବିଧା-ଗୋଇଠା ମାରି ସେ ସେମାନଙ୍କୁ ତଳେ ପକାଇଦେଲା। ତାପରେ ଝରକା ବାଟେ ବିଚାରାଳୟରୁ ବାହାରି ସହର ଭିତରେ ଭିତରେ ସେ ଧାଇଁ ପଳେଇଲା କାହିଁ କେତେଦୂର। ତାକୁ ଧରିବା ପାଇଁ ପଛେ ପଛେ କିଛି ଲୋକ ଦୌଡ଼ିଲେ ସତ, ମାତ୍ର ରେଡ୍ ୟୁ’ ଧରା ପଡ଼ିଲା ନାହିଁ।

ଟମ୍‌କୁ ସମସ୍ତେ ପ୍ରଶଂସା କଲେ। ସେ ପ୍ରକୃତରେ ଗୋଟିଏ ସାହସୀ ପିଲା ବୋଲି ସମସ୍ତେ ଜାଣିଲେ। ମାତ୍ର ଟମ୍ ଏବଂ ହାକ୍ ମନେ ମନେ ଡରୁଥାନ୍ତି ରେଡ୍ ୟୁ’କୁ। ଫେରିଆସି କେତେବେଳେ ହୁଏତ ସେ ସେମାନଙ୍କୁ ହତ୍ୟା କରିପାରେ। ତା ପକ୍ଷରେ ଏଭଳି

କାମ କରିବା କିଛି ଅସମ୍ଭବ ନୁହେଁ । ଅନ୍ଧାର ହେବାପରେ ସେମାନେ ବାହାରକୁ ଯିବା ବନ୍ଦ କରିଦେଲେ । ରାତିରେ ଟମ୍‌କୁ ଭଲ ନିଦ ହେଲା ନାହିଁ । ପୁଣି ସେ ଆଗ ପରି ଖରାପ ସ୍ୱପ୍ନ ଦେଖିବାରେ ଲାଗିଲା । ଦିନ ପରେ ଦିନ ଗଡ଼ିଗଲା ।

ଧୀରେ ଧୀରେ ଟମ ମନରୁ ଆତଙ୍କର ଛାଇ ଅପସରି ଗଲା । କେଉଁ ମୁଁ ଆଉ ଗାଁକୁ ଫେରିଲା ନାହିଁ । ସମ୍ଭବତଃ ଆଉ କେବେ ଫେରିବାର ଆଶା ନେଇ ସମ୍ପୂର୍ଣ୍ଣ ରୂପେ ମନରୁ ପୋଛି ଦେଇଥିଲା ।

## ଟମ ଏବଂ ହାକ୍ କିଛି ସଞ୍ଚିତ ଧନଲାଭ ଆଶାରେ ମାଟି ଖୋଳିଲେ

ଜଳଦସ୍ୟୁମାନଙ୍କ ବିଷୟରେ ଲେଖାଯାଇଥିବା ବହିଗୁଡ଼ିକ ଟମକୁ ପଢ଼ିବା ପାଇଁ ଖୁସି ଲାଗେ । ମାଟିତଳେ ପୋତା ଯାଇଥିବା ଧନ-ଦଉଲତ କଥା ଯେଉଁସବୁ ବହିରେ ଲେଖାଥାଏ ସେହି ପ୍ରକାର ବହିଗୁଡ଼ିକୁ ପାଇଗଲେ ତାହାର ଆନନ୍ଦ କଥା କହିଲେ ନ ସରେ । ସେହିସବୁ ବହି ସେ ଏକାଧିକ ଥର ପାଇଁ ପଢ଼ିବାକୁ ଇଚ୍ଛା କରେ । ଦିନେ ହାକ୍‌କୁ କହିଲା "କୌଣସି ଗୋଟିଏ ଜାଗାରେ କିଛି ଗୁପ୍ତ-ଧନ ମାଟିତଳେ ଥିବାର ମୁଁ ଜାଣିଛି । ଚାଲ, ସେହି ଧନତକ ମାଟି ଖୋଳି ବାହାର କରିବା ।"

ଟମ୍‌ର କଥା ଶୁଣି ଅବାକ୍ ହେଲା ହାକ୍ । ବୋକାଙ୍କ ପରି ପଚାରିଲା, "କେଉଁଠାରେ ? ଆଚ୍ଛା, ଜଳଦସ୍ୟୁମାନେ ଧନ ଦଉଲତ କେଉଁଠି ଲୁଚାନ୍ତି, କହିଲୁ ?"

"ଜଳଦସ୍ୟୁମାନେ ଭୂତ ରହୁଥିବା ଘରେ ବା କୌଣସି ନିର୍ଦ୍ଦିଷ୍ଟ ଗଛ ମୂଳରେ ଲୁଣ୍ଠିତ ଧନ ଗାତ ଖୋଳି ଲୁଚାଇ ରଖନ୍ତି ।"

"କିନ୍ତୁ ସେହି ଧନ ନେବା ପାଇଁ ସେମାନେ କ'ଣ ଫେରି ଆସନ୍ତି ନାହିଁ ?"

"ହଁ । ସମୟ ସମୟରେ ସେମାନେ ଫେରି ଆସନ୍ତି । ମାତ୍ର ସାଧାରଣତଃ ସେମାନଙ୍କୁ ଫେରିବାର ଦେଖାଯାଏ ନାହିଁ । କେତେବେଳେ କେତେବେଳେ ସେମାନଙ୍କର ସ୍ୱାଭାବିକ ମୃତ୍ୟୁ ହୁଏ । କେତେବେଳେ ଧରାପଡ଼ି ସେମାନଙ୍କୁ ଜେଲ ଖଟିବାକୁ ପଡ଼େ । ପୁଣି କୌଣସି କୌଣସି ସମୟରେ ଅନ୍ୟ ଲୋକ ହାତରେ ସେମାନଙ୍କର ଜୀବନ ଯାଏ । ମାଟିତଳେ ଲୁଚି ଯାଇଥିବା ଧନ ସେହିପରି ପଡ଼ି ରହିଥାଏ । କେବେ କାହାର ଭାଗ୍ୟ ଖୋଲିଲେ ସେହି ଧନ ତାହାଦ୍ୱାରା ଆବିଷ୍କୃତ ହୁଏ । ଆମେ ଯେବେ ଅନୁମାନ କରି ଠିକ ଜାଗାରେ ଖୋଳାତାଡ଼ା କରିବା ତାହାହେଲେ ମୁଁ ଭାବୁଛି, ଆମେ ନିଶ୍ଚିତରୂପେ କିଛି ଧନ ଲାଭ କରିପାରିବା ।"

"ସେଇ ଠିକ୍ ଜାଗାଟା ପୁଣି କେଉଁଠି ବୋଲି ତୁ ଭାବୁଛୁ ?"

"ପାହାଡ଼ ଉପରେ ସେଇ ଯେଉଁ ମରା ଗଛଟାଏ ଅଛି, ସେ'ଟା କ'ଣ ତୁ ଦେଖି ନାହୁଁ ? ମୁଁ ସୁନିଶ୍ଚିତ ଯେ ତାହା ମୂଳରେ କିଛି ଧନ ଲୁଚାଇ ରଖାଯାଇଛି । ଚାଲ, ପ୍ରଥମେ ସେଇଠାରେ ଚେଷ୍ଟା କରିବା ।"

ଏହା ସ୍ଥିର କରି ଟମ୍ ଏବଂ ହାକ୍ ଉଦ୍ଦିଷ୍ଟ ଜାଗାକୁ ବାହାରି-ଗଲେ । ଘରଠାରୁ ସେହି ଗଛର ଦୂରତା ପ୍ରାୟ ତିନି ମାଇଲ ହେବ । ଓଃ ! ସେଦିନର ଖରା କି ଟାଣୁଆ ! କିଏ ଯେପରି ଦେହରେ ଛୁଞ୍ଚ ଫୋଡ଼ି ଦେଉଛି, ଠିକ୍ ସେହିପରି ଜଣାଯାଉଥାଏ । ପାହାଡ଼ଟା ବି ଖୁବ୍ ଉଚ୍ଚ । ଉପରକୁ ଉଠିବା ସହଜ ବ୍ୟାପାର

ନ ଥାଏ । ହାତରେ ଗୋଟିଏ ଗୋଟିଏ କୋଡ଼ ଧରି ପିଲ୍ ଦୁଇଜଣ ଚାଲିଥାନ୍ତି ଲକ୍ଷ୍ୟସ୍ଥଳକୁ । ଉଦ୍ଦିଷ୍ଟ ଗଛ ପାଖରେ ପହଞ୍ଚିଲାବେଳକୁ ସେମାନେ ଖରାରେ ଦରସିଝା ହୋଇ ଯାଇଥାନ୍ତି । ଥକାରେ ଗୋଡ଼ ଛୁଡ଼ ପଡ଼ୁଥାଏ । ତଥାପି ଅର୍ଥଲୋଭ ସେମାନଙ୍କର ଶ୍ରାନ୍ତି ଦୂର କରିଦେଲା । ହାତରେ କୋଡ଼ ଧରି ସେମାନେ ମାଟି ତାଡ଼ିବାରେ ଲାଗିଗଲେ । ଘଣ୍ଟାଏ ତାଡ଼ିବା ପରେ ସେମାନେ କିଛି ସମୟ ପାଇଁ ବିଶ୍ରାମ ନେଲେ । ତାପରେ ପୁଣି ତାଡ଼ିଲେ । ଅନେକ ସମୟ ଚାଲିଗଲା । କିନ୍ତୁ କାହିଁ ? କୌଣସି ଧନ ଦଉଲତର ସନ୍ଧାନ ମିଳିଲା ନାହିଁ । ଶେଷରେ ଟମ୍ କହିଲା, "ହାକ୍, ମୋର ଭୁଲ ହୋଇଗଲା । ଆମେ ଏତେ ସମୟ ଧରି ଅଜାଗାରେ ତାଡ଼ିବାରେ ଲାଗିଛୁ । ଅର୍ଦ୍ଧରାତ୍ରି ସମୟରେ ଆମକୁ ପୁନରାୟ ଏଠାକୁ ଆସିବାକୁ ହେବ । ସେତେବେଳେ ଏଇ ଗଛର ଛାଇ କେଉଁଠାରେ ପଡ଼ୁଛି ସେଇକଥା ଦେଖିବାକୁ ପଡ଼ିବ । ସେଇ ଛାଇର ପ୍ରାନ୍ତଭାଗ ହିଁ ଠିକ୍ ଜାଗା । ଆମେ ଯେବେ ସେଠାରେ ଖୋଳିବା ତାହାହେଲେ କିଛି ନା କିଛି ଧନ ନିଶ୍ଚୟ ପାଇବା । ମନରେ କୌଣସି ସନ୍ଦେହ କରନା ନାହିଁ, ହାକ୍ ।"

ଅର୍ଦ୍ଧରାତ୍ର ସମୟରେ ପିଲ୍ ଦୁଇଜଣ ପୁନରାୟ ଆସି ସେହି ଗଛମୂଳରେ ପହଞ୍ଚିଲେ । ଛାଇ ଶେଷ ହୋଇଥିବା ଜାଗାରେ ସେମାନେ ଖୋଳିବା ଆରମ୍ଭ କରିଦେଲେ । ପୂର୍ବପରି ସେତେବେଳେ ମଧ୍ୟ ସେମାନେ ଅକୃତକାର୍ଯ୍ୟ ହେଲେ । କୌଣସି ଧନ ଦଉଲତ ସେମାନଙ୍କର ଆଖିରେ ପଡ଼ିଲା ନାହିଁ ।

ଟମ୍ କହିଲା, "ଆମକୁ ଆଉ କୌଣସି ଜାଗାରେ ଚେଷ୍ଟା କରିବାକୁ ପଡ଼ିବ ।"

"ସେ ଜାଗାଟା ପୁଣି କେଉଁଠି ?"

ଟମ୍ ଆଖିକୁ ଗୋଟିଏ ବୁଦ୍ଧି ଦଶିଲା । ସେଠାରୁ ଅଳ୍ପ ଦୂରରେ ଥିବା ଗୋଟିଏ ପୁରୁଣା ଘର ଆଡ଼କୁ ଆଙ୍ଗୁଳି ଦେଖାଇ ଟମ୍ କହିଲା, "ସେ ଆଡ଼କୁ ଚାହିଁ ଦେଖ । ସେଇ ଯେଉଁ ଘରଟା ଦେଖାଯାଉଛି, ସେ'ଟା ଗୋଟିଏ ଭୂତକୋଠି । ସେଇଠାକୁ ଗଲେ ଆମେ କିଛି ଧନ ପାଇ ପାରିବା !"

"ତୁ ଆଉ ସେଠାକୁ ଯିବା କଥା କହ ନାହିଁ, ଟମ୍ । ମୋତେ ଭୂତ ଘରକୁ ଯିବା ପାଇଁ ଖୁବ୍ ଡର ମାଡ଼େ ।"

ଆମେ ସେଠାକୁ ଦିନବେଳେ ଯିବା । ସେତେବେଳେ ସେଠାରେ ଭୂତ ନ ଥିବେ । ସେମାନେ କେବଳ ରାତିରେ ଘୂରି ବୁଲନ୍ତି । ତା ଛଡ଼ା ସେଠାରେ କେହି କେବେ ଭୂତ ଦେଖିଥିବାର ମୁଁ ଶୁଣି ନାହିଁ । ତେଣୁ ସେଠାରେ ଭୂତ ଅଛନ୍ତି ବୋଲି ମୁଁ ଭାବୁ ନାହିଁ ।"

"ଯାହା କହିଲୁ, ସେ କଥା କଣ ସତ ?"

"ସତ ନୁହେଁ କଣ ମିଛ ?"

"ତାହାହେଲେ ଦିନବେଳେ ମୁଁ ତୋ ସାଙ୍ଗରେ ସେଠାକୁ ଯିବି ।"

ପିଲା ଦିହେଁ ପାହାଡ଼ ତଳକୁ ଓହ୍ଲାଇଗଲେ । ସେଇ ଭୂତ-କୋଠିଟା ପାର ହୋଇ ଯିବାବେଳେ ଘଡ଼ିଏ ପାଇଁ ସେମାନେ ଛିଡ଼ା ହେଲେ । ଘର ଆଡ଼କୁ ଚାହିଁଲେ । ଜହ୍ନ ଆଲୁଅରେ ଗଛ-ଲତା ସମସ୍ତେ ହସୁଥାନ୍ତି । ହସୁ ନ ଥାଏ ଖାଲି ସେଇ ଘରଟି । ଆଲୁଳାୟିତ କେଶି କେଉଁ ଏକ ନିରମାଖୀ ପରି ଛିଡ଼ା ହୋଇ ରହିଥାଏ ବିମର୍ଷ ରୂପରେ । ଚାରିପାଖରେ ଭଙ୍ଗାରୁଜା ବାଡ଼ । ଘରର ଛପର ଭାଙ୍ଗି ପଡ଼ିଥାଏ । ନିତାନ୍ତ ଅବହେଳିତ ବଗିଚାଟିଏ । ତା ଭିତରେ ଅନାବନା ଗଛ ପୂରି ଯାଇଥାଏ । ସହସା ପିଲା ଦୁହିଁଙ୍କୁ ଖୁବ୍ ଡର ମାଡ଼ିଲା । ସେମାନେ ଆଖିବୁଜି ଦୌଡ଼ିଲେ ଗାଁକୁ !

# ଭୂତକୋଠି

ତହିଁ ଆରଦିନ ଦ୍ୱିପ୍ରହର ବେଳେ ପିଲ ଦିହେଁ ସେଇ ଭୂତ-କୋଠିକୁ ଗଲେ । କୋଡ଼ି ଦୁଇଟି ହାତରେ ଧରିଥାନ୍ତି । ସେମାନେ ମାଟି ଖୋଳିବାକୁ ଯାଉଛନ୍ତି ଠିକ୍ ସେତିକିବେଳେ ଟମ୍ କୋଡ଼ି ରଖି ଦେଇ କହିଲ, "ହାକ୍, ଆଜି ଶୁକ୍ରବାର ବୋଲି ମୁଁ ଭୁଲି ଯାଇ-ଥିଲି । ଆଜି ଖାଇଁ ଖୋଳିବା କାମ ହୋଇପାରିବ ନାହିଁ ।"

"ହୋଇ ନ ପାରିବାର କାରଣ କ'ଣ ?"

"ଶୁକ୍ରବାର ଦିନ ଭୂତକୋଠିକୁ ଯିବା ମନା । ବାରଣ ନ ମାନି ଗଲେ ଦୁର୍ଭାଗ୍ୟ ଆସିବା ସୁନିଶ୍ଚିତ ।"

ପିଲ ଦିହେଁ ଘରକୁ ଫେରିଗଲେ । ତତ୍ପର ଦିନ ସେତିକି-ବେଳେ ସେମାନେ ପୁଣି ଆସି ସେଠାରେ ପହଞ୍ଚିଲେ । କୋଡ଼ି ଧରି ଘର ଭିତରକୁ ଗଲେ । ଘରର ଗୋଟିଏ କୋଣରେ କୋଡ଼ି ଦୁଇଟି ରଖି ସେମାନେ ଘରଯାକ ବୁଲି ବୁଲି ଦେଖିଲେ । ଭିତରେ ପୂର୍ଣ୍ଣ ନୀରବତା ରାଜତ୍ୱ କରୁଥାଏ । ସେମାନଙ୍କୁ ଟିକେ ଟିକେ ଡର ମାଡ଼ିଲ ।

ହାକ୍ ଧୀରେ ଧୀରେ କହିଲ, "ବୁଝିଲୁ ଟମ୍; ମୋତେ ଏ ଜାଗାଟା ଭଲ ଲଗୁ ନାହିଁ ।"

ଟମ୍ ମଧ୍ୟ ଚୁପ୍ ଚୁପ୍ କହିଲ, "ମୋତେ ବି ଭଲ ଲଗୁ ନାହିଁ । କିନ୍ତୁ ମୋତେ ଲଗୁଛି, ଆମେ ଏଠାରେ କିଛି ନା କିଛି ମୂଲ୍ୟବାନ୍ ପଦାର୍ଥ ପାଇବା । ଧନ ଦଉଲତ ଲୁଚାଇବା ପାଇଁ ଏ ଜାଗାଟା ଖୁବ୍ ସୁନ୍ଦର ହୋଇଛି । ଆ, ଚାରିଆଡ଼େ ବୁଲି ଦେଖିବା । ସେମାନେ ତଳ ମହଲରେ ଥିବା ସବୁଯାକ କୋଠରି ଦେଖିଲେ ! ମାତ୍ର ଧନ-ସମ୍ପଦର କୌଣସି ସଙ୍କେତ ପାଇଲେ ନାହିଁ ।

ତା ପରେ ବହୁତ ସମୟ କଥାବାର୍ତ୍ତା ହୋଇ ଉପର ମହଲାକୁ ଗଲେ । ଉପରକୁ ଯାଇଥିବା ସିଡ଼ିର ପାହାଚଗୁଡ଼ିକ ଖୁବ୍ ପୁରୁଣା ହୋଇଥିବାରୁ ସେମାନେ ସାବଧାନ ହୋଇ ଧୀରେ ଧୀରେ ପାଦ ପକାଉଥାନ୍ତି ।

ଶେଷରେ ଯାଇ ସବା ଉପରେ ପହଞ୍ଚିଲେ । ଏହି ସମୟରେ କୌଣସି ଏକ ଶବ୍ଦ ସେମାନଙ୍କର କର୍ଣ୍ଣଗୋଚର ହେଲା । କିଏ ଯେପରି ସେମାନଙ୍କ ଆଡ଼କୁ ଆସୁଛି, ତାଙ୍କୁ ସେହିପରି ଜଣାଗଲା । ଏକ ଅଜଣା ଭୟରେ ସେମାନେ ଅସ୍ଥିର ହୋଇ ପଡ଼ିଲେ । ଲୁଚିବାଲାଗି ଜାଗା ଖୋଜିବାରେ ଲାଗିଲେ । ମାତ୍ର ସେପରି କୌଣସି ଜାଗା ସେମାନଙ୍କ ଆଖିରେ ପଡ଼ିଲା ନାହିଁ । ବାୟୁ ସଞ୍ଚାଳିତ ଶୁଖିଲା ପତ୍ର ପରି ସେମାନଙ୍କର ଦେହସାରା ଥରିବାରେ ଲାଗିଥାଏ । ଛାତି ଧଡ଼ପଡ଼ ହେଉଥାଏ । ଆସିବା ଲୋକଟା କିଏ ? ଭୂତ ? ଜଳଦସ୍ୟୁ ? ଡକାୟତ ? ରେଡ୍‌ସ୍କ୍ ? ପାଲି ମେଲିଛି ଟମ୍ ଗୁହାଁଥାଏ ହାକ୍‌କୁ, ଆଉ ହାକ୍ ଗୁହାଁଥାଏ ଟମ୍‌କୁ । କାହାରି ମୁହଁରେ ଟୋପାଏ ହେଲେ ରକ୍ତ ନ ଥାଏ । ପିଲା ଦୁହିଁଙ୍କର ମୁଖମଣ୍ଡଳ ଦେଖାଯାଉଥାଏ ଠିକ୍ ଦୁଇଖଣ୍ଡ ଧଳା କାଗଜ ଫର୍ଦ୍ଦ ପରି । ଅନନ୍ୟୋପାୟ ହୋଇ ସେମାନେ ଚଟାଣ ଉପରେ ପଡ଼ି ରହିଥାନ୍ତି । ଚଟାଣରେ ଥିବା ଫାଟ ବାଟେ ତଳେ ଥିବା କୋଠରିକୁ ଗୁହୁଁଥାନ୍ତି ।

କୋଠରି ଭିତରକୁ ଦୁଇଜଣ ଲୋକ ଆସିଲେ । ସେମାନଙ୍କ ମଧ୍ୟରୁ ଜଣକର ନାମ ପିଲା ଦୁହିଁଙ୍କୁ ଭଲ ରୂପେ ଜଣାଥିଲା । ଲୋକମାନେ ତାକୁ "ସ୍ପେନିସ୍ଯାର୍ଡ" ବୋଲି ଡାକନ୍ତି । ସହରର ଲୋକମାନଙ୍କଠାରେ ସେ ଅପରିଚିତ । ମୁଣ୍ଡରେ ତା'ର ଧଳା ଧଳା କେଶ । ଆଖିରେ କଳା ଚଷମା । ରାସ୍ତାରେ ବୁଲି ବୁଲି ଭିକ ମାଗେ । ଜଡ଼ା । ଆଖିକି ତାର ଭଲ ଦେଖାଯାଏ ନାହିଁ । ସେଥିପାଇଁ

ତାକୁ ଦେଖିଲେ ଲୋକମାନଙ୍କର ଦୟା ହୁଏ । ସମସ୍ତେ ତା ହାତରେ କିଛି କିଛି ପଇସା ଦିଅନ୍ତି । ଅନ୍ୟ ଲୋକଜଣକ ପିଲା ଦୁହିଁଙ୍କଠାରେ ସମ୍ପୂର୍ଣ୍ଣ ଅଜଣା । ଦୁଇଜଣଯାକ ଲୋକ ପାଖାପାଖି ବସି କଥାବାର୍ତ୍ତା ହେବାକୁ ଲାଗିଲେ । ହାକ୍ କହିଲା, "ଇଏ କ'ଣ ? 'ସ୍ପେନୀୟାର୍ଡ଼' ଜଣକ ତ କାଲା ନୁହେଁ !"

"ଚୁପ୍ ରହ !"

ତା ପରେ "ସ୍ପେନୀୟାର୍ଡ଼"ର କଥା ତାଙ୍କ କାନରେ ବାଜିଲା । ସେ କହୁଥାଏ, "ଏ ଜାଗାଟିକୁ ମୁଁ ଟିକିଏ ହେଲେ ପସନ୍ଦ କରୁ ନାହିଁ । କାରଣ ମୁଁ ଜାଣିପାରୁଛି ଯେ ଏହି ସ୍ଥାନଟି ବଡ଼ ବିପଜ୍ଜନକ ।" ସେ ତ ସମ୍ପୂର୍ଣ୍ଣରୂପେ ଇଞ୍ଜୁନ୍ ଜୋ'ର ସ୍ୱର ପରି ଜଣା-ପଡ଼ୁଛି ! "ସ୍ପେନୀୟାର୍ଡ଼" ଜଣକ ଇଞ୍ଜୁନ୍ ଜୋ ଭିନ୍ନ ଆଉ କେହି ନୁହେଁ । ଭୟରେ ପିଲା ଦୁହିଁଙ୍କର ନିଶ୍ୱାସ ରୁଦ୍ଧ ହୋଇ ଆସିଲା ।

ଇଞ୍ଜୁନ୍ ଜୋ ତା ଅହଙ୍କା କଥାର ଖିଅ ଧରି ପୁଣି କହିଲା, "ମୁଁ ଆଉ ବେଶୀଦିନ ପାଇଁ ଏଠାରେ ରହି ପାରିବି ନାହିଁ । କାରଣ ଏ ସ୍ଥାନ ମୋ ପାଇଁ ଖୁବ୍ ବିପଦପୂର୍ଣ୍ଣ । ଆଉ ଗୋଟେ-ଦୁଇଟା କାମ ସାରିଦେଲେ ମୁଁ ଏ ସ୍ଥାନ ଛାଡ଼ି ଚାଲିଯିବି । ତୁ ନଈ ଉପରକୁ ଫେରି ଯା । ମୋତେ ଅପେକ୍ଷା କରିଥିବୁ । ମୁଁ ଗଲେ ସାଙ୍ଗ ହୋଇ ଟେକ୍‌ସାସ୍ ପର୍ଯ୍ୟନ୍ତ ଯିବା ।

ପିଲା ଦୁଇଜଣ ପରସ୍ପର ସହିତ ଏତେ ଅନୁଚ୍ଚ ସ୍ୱରରେ କଥାବାର୍ତ୍ତା ହେଉଥାନ୍ତି ଯେ କେହି କାହା କଥା ଶୁଣିପାରୁ ନ ଥାଏ । ମାତ୍ର ଇଞ୍ଜୁନ୍ ଜୋ'ର କଥା ସେମାନଙ୍କ କାନରେ ବାଜୁ-ଥାଏ । ସେ ବାରମ୍ବାର କହୁଥାଏ ଯେ ଗୋଟେ-ଦୁଇଟା ଜରୁରୀ କାମ ଶେଷ ନ କଲା ପର୍ଯ୍ୟନ୍ତ ସେ ସେଠାରୁ ଯିବ ନାହିଁ । ପିଲା-ମାନେ ଭାବିଲେ, "ସେ ଆମ ଦୁହିଁଙ୍କୁ ମାରି ସାରିଲେ ଯାଇ ଏଠାରୁ

ଯିବ ବୋଲି ସ୍ଥିର କରିଛୁ !" ଶେଷରେ ରେଡ୍ ସୁ କହିଲା, "ମୋତେ ବଡ଼ ଥକା ଲାଗିଲାଣି । ମୁଁ ଶୋଇବାକୁ ଯାଉଛି । ତୁ ଏଇଠାରେ ଜଗି ବସିଥିବୁ ।" ରେଡ୍ ସୁ ଶୋଇବାକୁ ଗଲା । ଅନ୍ୟ ଲୋକଜଣକ କିଛି ସମୟ ପାଇଁ ଜାଗ୍ରତ ରହିଲା । ତାପରେ ଖୁବ୍ ଲଢ଼ିଲେ ବି ନିଦ ପାଖରେ ପରାଭବ ସ୍ୱୀକାର କଲା । ମୁଣ୍ଡ ଝୁଙ୍କି ଆସିଲା ତଳକୁ । ଭଲ-ମନ୍ଦ ନ ବିଚାରି ସେ ବି ଶୋଇପଡ଼ିଲା ଘଡ଼ିକ ଭିତରେ ।

ଟମ୍ ଧୀରେ ଧୀରେ କହିଲା, "ଆ, ଏଇଟା ପଳାଇଯିବାର ଏକ ସୁବିଧା ସମୟ ।" ଏହା କହି ଟମ୍ ଆଗକୁ ଗୋଟିଏ ପାହୁଣ୍ଡ ପକାଉଛି ତା' ପାଦତଳେ ଥିବା ପଟାଟି ଖୁବ୍ ଜୋର୍‌ରେ କଡ଼-କାଡ଼ ଶବ୍ଦ କରି ଫାଟିଗଲା । ସେ ଆଉ ପାଦ ଉଠାଇ ପାରିଲା ନାହିଁ । ସତେ ଯେପରି ସେ ଅଚଳ ପ୍ରସ୍ତର ଖଣ୍ଡ ପରି ସ୍ଥାଣୁ ପାଲଟିଗଲା ମୁହୂର୍ତ୍ତକ ମଧ୍ୟରେ ।

ତା ପରେ କାଳେ କିଛି ଭୟଙ୍କର କାଣ୍ଡ ଘଟିପାରେ ଏଇ ଆଶଙ୍କାରେ ପିଲା ଦୁହିଁଟି ଅପେକ୍ଷା କରି ରହିଲେ ।

## ରେଡ୍ ସୁ' ଏବଂ ତାହାର ଗୁପ୍ତଧନ

ଦିନ ଅସ୍ତମିତ ହେଲା । ପଶ୍ଚିମ ପାହାଡ଼ର ପଛ ପଟେ ସୂର୍ଯ୍ୟ ଦେବତା ମୁହଁ ଲୁଚାଇଲେ । ପିଲା ଦୁହେଁ ସେ ପର୍ଯ୍ୟନ୍ତ ଅପେକ୍ଷା କରି ବସି ରହିଥାନ୍ତି ସେଇଠାରେ । ଗୁହାଁ ଗୁହାଁ ଘରପାଖରୁ ଅନ୍ଧାର ମାଡ଼ି ଆସିଲା । ସକାଳ ହେବା ଆଗରୁ କ'ଣ ରେଡ୍ ସୁ'ର

ନଦ ଭର୍ଙ୍ଗିବ ? ପିଲ ଦୁହିଁଙ୍କୁ କ'ଣ ସେଠାରେ ରାତଯାକ ଅପେକ୍ଷା କରି ବସି ରହିବାକୁ ହେବ ?

ସୂର୍ଯ୍ୟ ବୁଡ଼ିବାର ଘଣ୍ଟାଏ ପରେ ରେଡ୍ ଯୁ'ର ନଦ ଭାଙ୍ଗିଲା । ନଦରୁ ଉଠି ସେ ଚାରିପାଖ ଚାହିଁଲା । ତା ସାଙ୍ଗ ଜଣକୁ ନଦରେ ଘୁଙ୍ଗୁଡ଼ି ମାରୁଥିବାର ଦେଖି ସେ ରାଗରେ ଜଳିଗଲା । ପାଖକୁ ଯାଇ ତାକୁ ଖୁବ୍ ଜୋର୍‌ରେ ଗୋଇଠା ମାରିଲା । ତା'ର ନଦ ଭାଙ୍ଗି-ଯିବାରୁ କହିଲା, "ଆ, ଆମକୁ ସଙ୍ଗେ ସଙ୍ଗେ ଏଠାରୁ ଚାଲିଯିବାକୁ ହେବ । ତେବେ ଯିବା ଆଗରୁ ଆମକୁ ଟଙ୍କା ପଇସାଯାକ ଲୁଚାଇ ରଖି ଦେବାକୁ ପଡ଼ିବ । ସେସବୁ ନେଇ ବାହାରକୁ ଯିବା ଆମ ପକ୍ଷରେ ସୁବିଧାଜନକ ହେବ ନାହିଁ ।"

"ଟଙ୍କା" ଆଉ "ଲୁଚାଇବା" ଏଇ ଶବ୍ଦ ଦୁଇଟି ପିଲ ଦୁହିଁଙ୍କ କାନରେ ବାଜିଲା । ସେମାନଙ୍କର ଆଖି ଜଳି ଉଠିଲା । ମନରୁ ଆତଙ୍କ ତୁଟିଲା । ଧନ-ସମ୍ପଦ ! ଟମ୍ ଧୀରେ ଧୀରେ ହାକ୍‌କୁ କହିଲା, "ଆମ୍ଭେ ଠିକ୍ ଜାଗାକୁ ଆସିଥିବା କଥା କଣ ତୋତେ କହି ନ ଥିଲି ? ମୋ କଥା ଠିକ୍ ହେଲା କି ନାହିଁ ଏବେ ଦେଖ ।" ଉପରେ ଥିବା ଫାଟ ବାଟେ ତଳ କୋଠରିରେ ଲୋକ ଦୁଇଜଣଙ୍କର କାମ ସେମାନେ ଲକ୍ଷ୍ୟ କରୁଥାନ୍ତି ।

ଲୋକ ଦୁଇଜଣ ଗୋଟିଏ ଓଜନିଆ ପଥର ଟେକିଲେ । ରେଡ୍ ଯୁ' ତାହାର ଛୁରୀଟି କାଢ଼ି ଆଣିଲା ଏବଂ ଗୋଟିଏ ଗାତ ଖୋଳିବାରେ ଲାଗିଲା । ସେ ଖୋଳିବା ବନ୍ଦ କରୁ ନ ଥାଏ । ଶେଷରେ ଛୁରୀର ଅଗଭାଗ କ'ଣ ଗୋଟିଏ ଟାଣୁଆ ଜିନିଷରେ ବାଜିଲା ।

"ସେଇଟା କ'ଣ ?"

"ଟିକେ ଅପେକ୍ଷା କର ।"

ରେଡ୍ ସ୍ୱୁ' ପୁଣି ଖୋଳିବାରେ ଲାଗିପଡ଼ିଲା ।

"ଏଇଟା ଗୋଟିଏ ବାକ୍ସ । ଏହା ଏକୁଟିଆ ବାହାର କରିବା ସହଜ ନୁହେଁ । ମୋତେ ଟିକେ ସାହାଯ୍ୟ କର ।" ରେଡ୍ ସ୍ୱୁ' ଏବଂ ତାହାର ସାଙ୍ଗ ଦୁହେଁ ମିଶି ବାକ୍ସଟି ବାହାର କଲେ । ତାହା ଖୋଲି ପେଲା କଲେ ।



"ସୁନା ! ସୁନା" ବୋଲି ସେମାନେ ଆନନ୍ଦରେ ଚିତ୍କାର କରି ଉଠିଲେ । ସେମାନଙ୍କର ଆଗ୍ରହ-ଉତ୍ତେଜନା ଦେଖେ କିଏ ?

ପିଲା ଦୁଇଜଣ ଉପରେ ଥିବା ଫାଟ ବାଟେ ଏସବୁ କଥା ଦେଖୁଥାନ୍ତି । ଏତେଗୁଡ଼ିଏ ସୁନା ଦେଖି ସେମାନେ ନିଜ ନିଜର ଆଖିକୁ ବିଶ୍ୱାସ କରିପାରୁ ନ ଥାନ୍ତି । ଏକ ଅପୂର୍ବ ଆନନ୍ଦରେ ସେମାନେ ରୋମାଞ୍ଚିତ ହୋଇ ଉଠୁଥାନ୍ତି ।

ସେଇ ଅସରତିପୂର୍ଣ୍ଣ ବାକ୍ସ ଭିତରକୁ ହାତ ଭୂରାଇ ଲୋକ ଦୁହେଁ "ସୁନା ! ସୁନା !" ବୋଲି ପୁନଃ ପୁନଃ ଚିତ୍କାର କରିବାରେ ଲାଗିଥାନ୍ତି ।

ରେଡ଼୍ ସୁ'ର ସାଙ୍ଗଜଣକ କହିଲା, "ମୁରେଲ୍‌ଙ୍କର ଲୋକମାନେ ଏଠାକୁ ଯିବା ଆସିବା କରୁଥିଲେ । ଏହା ସେମାନଙ୍କର ଗୁପ୍ତଧନ ।"

ତାହାର କଥା ଶେଷ ନ ହେଉଣୁ ରେଡ଼୍ ସୁ କହିଲା, "ବର୍ତ୍ତମାନ କିନ୍ତୁ ଏ ଧନ ଆମ ଭିନ୍ନ ଆଉ କାହାର ନୁହେଁ ।

"ଏହା ଲୁଚାଇବା କେଉଁଠି ?"

ରେଡ଼୍ ସୁ' କହିଲା, "ଚାଲ, ଏହାକୁ ଅନ୍ୟ ଏକ ଜାଗାରେ ପୋତି ଦେବା । କିନ୍ତୁ ତାହା କରିବା ପାଇଁ ଆମ୍ଭମାନଙ୍କର ଗୋଟିଏ କୋଡ଼ି ଦରକାର ।" ଖୋଜିବା ଆଖିରେ ସେ ଚାରିପାଖ ଚାହିଁଲା । ମଜୁରିଆ ମିସ୍ତ୍ରିମାନଙ୍କର କୋଡ଼ି ଦୁଇଟା ତା'ର ଆଖିରେ ପଡ଼ିଲା । ପଚାରିଲା, "ଏଇ କୋଡ଼ି ଦୁଇଟା ଏଠାକୁ ଆସିଲା କିପରି ?" ସେ ଆନମନା ହେଲା । ସେଗୁଡ଼ିକୁ ହାତରେ ଉଠାଇ ପରୀକ୍ଷା କଲା ।

"ନୂଆ ଓଦା ଯାଇଥିବା ମାଟି ଏଗୁଡ଼ିକରେ ଲାଗିଛି । କିଛି ସମୟ ଆଗରୁ ହୁଏତ କେହି ଲୋକ ଏଠାକୁ ଆସିଥିଲା······ନା, ଏଠାରେ ଏହି ଅର୍ଥରାଶି ବାକ୍ସ ପୋତି ରଖିଯିବା କେବେହେଲେ ନିରାପଦ ନୁହେଁ । ଏହା ନେଇ ମୋ ରହିବା ଜାଗାରେ ପହଞ୍ଚାଇବାକୁ ପଡ଼ିବ ।"

ସାଙ୍ଗଜଣକ ପଚାରିଲା, "ଏକ ନମ୍ବର କି ଦୁଇ ନମ୍ବର ?"

"ଦୁଇ ନମ୍ବର । କ୍ରସ୍ ଚିହ୍ନ ତଳେ । ସେଇଟା ସବୁଠାରୁ ଅଧିକ ନିରାପଦ ସ୍ଥାନ ।"

ତା କଥାରେ ସ୍ୱୀକୃତି ଜଣାଇ ଅନ୍ୟଜଣକ କହିଲା, "ହଁ, ତାହା କରିବା ନିରାପଦ ହେବ । ଏଥର ଯିବା ଚାଲ । ଆଉ ବେଶୀ ସମୟ ପାଇଁ ଏଠାରେ ରହିବା ଭଲ ହେବ ନାହିଁ ।"

ରେଡ଼୍ ସୁ' କହିଲା, "ତୋ କଥା ଅନୁସାରେ ଏଠାରୁ ଶୀଘ୍ର ଚାଲିଯିବା ଭଲ ହେବ ବୋଲି ମୁଁ ମାନୁଛି । କିନ୍ତୁ ଯିବା ପୂର୍ବରୁ

ଗୋଟିଏ କଥା ଜାଣିବାଲାଗି ମୋର ଖୁବ୍ ଇଚ୍ଛା ହେଉଛି । ଏଇ କୋଡ଼ ଦୁଇଟା ଏଠାକୁ କିଏ ଆଣିଲା ସେକଥା ଜାଣିବାଲାଗି ମୋର ଖୁବ୍ କୌତୁହଳ ଜନ୍ମୁଛି । ସେତିକ ନ ଜାଣିବା ପର୍ଯ୍ୟନ୍ତ ମୁଁ ଏଠାରୁ ଯିବ ନାହିଁ ।"

ପିଲା ଦୁଇଜଣ ଏ ପର୍ଯ୍ୟନ୍ତ ସେମାନଙ୍କ କଥାକୁ କାନେଇଥିଲେ । ରେଡ଼୍ ୟୁ'ର କଥା ଶୁଣି ସେମାନେ ଆଉ ଯା'ନ୍ତି କୁଆଡ଼େ ! ଥରହରପଣ ହୋଇ ଥରିବାରେ ଲଗିଲେ ।

"ସମ୍ଭବତଃ ଏହା ସେଇ ପିଲା ଦୁଇଜଣଙ୍କର କାଣ୍ଡ । ଯେଉଁ-ମାନଙ୍କୁ ଆମେ ଗତକାଲି ଦେଖିଥିଲୁ ।"

"ଆରେ, ଠିକ୍ କହୁଛୁ । ତୋର ଅନୁମାନ କିଛି ମିଛ ନୁହେଁ । ଏ ନିଶ୍ଚୟ ପିଲା ଦୁହିଁଙ୍କର କାଣ୍ଡ ।" କହିସାରି ଏକ ବିକଟ ସ୍ୱରରେ ରେଡ଼୍ ୟୁ' ହସିବାରେ ଲଗିଲା । ତା'ପରେ କହିଲା, "ସେମାନେ ଆଜି ଏଇଠାରେ ଥାଇ ପାରନ୍ତି । ହୁଏତ ସେମାନେ କେଉଁଠାରେ ଲୁଚିଛନ୍ତି । ଉପର ମହଲାକୁ ଯାଇ ଥରେ ଦେଖି ଆସେ···"

ପିଲା ଦୁହିଁଙ୍କର ହୃତ୍ସ୍ପନ୍ଦନ ପ୍ରାୟ ବନ୍ଦ ହୋଇ ଆସିଲା । ପାହାଚ ଉପରକୁ ଉଠିବା ଆରମ୍ଭ କଲା ରେଡ଼୍ ୟୁ' । ତା'ର ପାଦ ପକାଇବା ଶବ୍ଦ ପିଲାମାନଙ୍କର କାନରେ ବାଜିଲା । ସେହି ଶବ୍ଦ ନିକଟରୁ ନିକଟତର ହେଲା । ସେମାନେ ଭାବିଲେ, ଆଜି ଆମ୍ଭ-ମାନଙ୍କର ଜୀବନ ଯିବା ସୁନିଶ୍ଚିତ । ଆସନ୍ନ ବିପଦର ଆଶଙ୍କା ସେମାନଙ୍କୁ ହତବୁଦ୍ଧି କରି ପକାଇଲା । ଅନନ୍ୟୋପାୟ ହୋଇ ସେମାନେ ମୃତ୍ୟୁର ଅପେକ୍ଷାରେ ପଡ଼ି ରହିଥାନ୍ତି । ପାଦ ଶବ୍ଦ ଆହୁରି ନିକଟରେ ଶୁଭାଗଲା । ପିଲା ଦୁଇଜଣ ଖୁବ୍ ଧୀରେ ଧୀରେ ନିଃଶ୍ୱାସ ମାରିବାରେ ଲଗିଲେ ।

କଡ଼୍ କାଡ଼୍ ଶବ୍ଦ କରି ରେଡ୍ ସୁ' ଉଠୁଥିବା ସିଡ଼ିର ଗୋଟିଏ ପାହାଚ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଗଲା । ସେ ଗଡ଼ ଗଡ଼ ଆସି ଚଟାଣରେ ପଡ଼ିଗଲା । ସୌଭାଗ୍ୟକୁ ତାର ସେପରି ବିଶେଷ କିଛି ଅନିଷ୍ଟ ହେଲା ନାହିଁ । ସେ ଖୁବ୍ ଶୀଘ୍ର ଉଠି ଛିଡ଼ା ହେଲା ।

ଅନ୍ୟ ଲୋକ ଜଣକ କହିଲା, "ଆ, ଏଠାରୁ ଶୀଘ୍ର ଚାଲିଯିବା । ଆଉ ଉପରକୁ ଉଠିବାର ମନ କର ନାହିଁ । ଗୋଡ଼ ଭାଙ୍ଗିବ କି ମୁଣ୍ଡ ଫାଟିବ ସେକଥା କିଏ କହିବ ! ମୁଁ ତୋତେ ବହୁବାର କହିଲଣି ଯେ ଏ ଜାଗାଟା ଆମମାନଙ୍କ ପାଇଁ ଆଦୌ ନିରାପଦ ନୁହେଁ ।"

ଆଘାତ ପାଇଥିବା ଗୋଡ଼ଟିକୁ ଘଷୁ ଘଷୁ ରେଡ୍ ସୁ' କହିଲା, "ଚାଲ, ଏଠାରୁ ଚାଲିଯିବା । ମୋତେ ବି କାହିଁକି ଏ ଜାଗା ଭଲ ଲାଗୁ ନାହିଁ ।"

ଅପରପି ବାକ୍ସଟି ପାଖରେ ଧରି ହିନ୍ଦୁଆକ ସେହି ଘର ଛାଡ଼ି ଚାଲିଗଲେ । ପିଲା ଦୁହେଁଜଣ ତଳକୁ ଓହ୍ଲାଇ ଜୀବନ ବିକଳରେ ଦୌଡ଼ିଲେ ଆଖିବୁଜି ।

ଗାଁ ପାଖରେ ପହଞ୍ଚି ସେମାନେ ଛିଡ଼ା ହେଲେ । ଟମ୍ ପଚାରିଲା, "ହାକ୍, ସେମାନେ ଯେ ଦୁଇ ନମ୍ବର ଚିହ୍ନ ଥିବା ଜାଗାରେ ଅସରପି ବାକ୍ସ ପୋତି ରଖିବେ ବୋଲି କହିଗଲେ ତୁ ସେହି ଜାଗା ଦେଖିଛୁ କି ?" "ନା, ମୁଁ କେବେହେଲେ ସେଭଳି ଜାଗା ଥିବା କଥା ଜାଣି ନାହିଁ । ଏବେବେଳେ ବୁଲି ଜାଗାଟା ବାହାର କରିବା କଷ୍ଟକର ହେବ ନାହିଁ ।" ମନରୁ ଭୟ ଛାଡ଼ି ଯାଇ ନ ଥାଏ । ପଚାରିଲା, "ଟମ୍, କିଛି କାମ ସାରିବା ପରେ ରେଡ଼୍ ସୁ' ଏଠାରୁ ଯିବ ବୋଲି ଯାହା କହିଲା ତାର ଅର୍ଥ କ'ଣ ? ସେ କ'ଣ ଆମ ଦୁହିଁଙ୍କୁ ମାରିବାର ଯୋଜନା କରୁଛି ?

ଟମ୍ କହିଲା, "ମୁଁ ତା' ମନକଥା ଜାଣିବି କିପରି ? ମୁଁ ଏବେ ଘରକୁ ଯାଉଛି ।"

## ଟମ୍ ଏବଂ ହାକ୍ ରେଡ୍ ଯୁ'ର ଅସରପି ଖୋଜିବା ପାଇଁ ଗଲେ

ସେଦିନ ରାତିରେ ଟମ୍‌ର ଆଖିକୁ ଠିକେ ହେଲେ ନିଦ ଆସିଲା ନାହିଁ । ସକାଳେ ଜଳଖିଆ ଖାଇସାରି ସେ ହାକ୍‌ର ଅନ୍ୱେଷଣରେ ବାହାରିଗଲା ।

ତାକୁ ପାଇବାପରେ କହିଲା, "ହାକ୍, ରେଡ୍ ଯୁ' କୁଆଡ଼େ ଗଲା ଆମକୁ ଖୋଜି ବାହାର କରିବାକୁ ପଡ଼ିବ । ଅସରପି ସେତକ ଯେପରି ଆମ ହାତକୁ ଆସିବ ସେଥିଲାଗି ଆମକୁ ପାରୁପର୍ଯ୍ୟନ୍ତ ଚେଷ୍ଟା କରିବାକୁ ହେବ ।"

"ମୁଁ କ'ଣ ସେକଥା ଭୁଲିଗଲିଣି ବୋଲି ତୁ ଭାବୁଛୁ ? ମୋ ମୁଣ୍ଡ ଭିତରେ ବି ସେ ଚିନ୍ତା ଖେଳୁଛି । ଦୁଇ ନମ୍ବର ଚିହ୍ନ ଥିବା ଜାଗାଟା ହିଁ ଧନଲୁଚିର ଜାଗା । କିନ୍ତୁ ସେ ଜାଗାଟା କେଉଁଠି ?"

"ମୁଁ କଣ ସେ କଥା ଜାଣିଛି ? ଏହା ଗୋଟିଏ ଘରର ନମ୍ବର ହେବ ବୋଧହୁଏ ।"

"କିନ୍ତୁ ଏଠାରେ ତ କାହିଁ କୌଣସି ଘରେ ନମ୍ବର ଦିଆଯାଇ-ଥିବାର ଦେଖାଯାଏ ନାହିଁ ?"

"ତୋ କହିବା କଥା ଅବଶ୍ୟ ଠିକ୍ । ଏହା ଗୋଟିଏ କୋଠରିର ନମ୍ବର କି ? ମୋର ଅନୁମାନ ତାହା ହୁଏତ ପାନ୍ଥଶାଳାର କୌଣସି ଏକ କୋଠରି ହୋଇଥିବ ।"

"ତୋର ଅନୁମାନ ଠିକ୍ ପରି ଜଣାପଡ଼ୁଛି । ଖୁବ୍ ସମ୍ଭବ ଏହା ଗୋଟିଏ କୋଠରିର ନମ୍ବର ।"

"କୋଠରିଟା ଖୋଜି ବାହାର କରିବାକୁ କଷ୍ଟ ହେବ ନାହିଁ । ପାନ୍ଥଶାଳା ବୋଲି ଏ ଗାଁରେ ମାତ୍ର ଦୁଇଟା ।"

"ଚାଲ ଦେଖି ଆସିବା । ଦୁହେଁଯାକ ଯିବା ଦରକାର ନାହିଁ । ମୁଁ ଏକୁଟିଆ ଯାଇ ଦେଖି ଆସେ ।"

"ନା, ହାକ୍ ! ତୁ ଯାଆ ନାହିଁ । ମୋତେ ଅପେକ୍ଷା କରି ଏଇଠାରେ ବସିଥା' । ମୁଁ ଭଲ ଭାବରେ ଦେଖି ଅଳ୍ପ ସମୟ ଭିତରେ ଫେରି ଆସିବ ।"

ପ୍ରାୟ ଅଧଘଣ୍ଟାକ ମଧ୍ୟରେ ଟମ୍ ଫେରି ଆସିଲା ।

"ହେପ୍‌କାନ୍‌ସ ପାନ୍ଥଶାଳା ଦେଖିଲି । ସେଠାକାର ଦୁଇନମ୍ବର କୋଠରିରେ ରେଡ୍ ଯୁ' ନାହିଁ । ଜଣେ କେହି ଯୁବକ କିରାଣିଙ୍କୁ ସେଠାରେ ରହୁଥିବାର ଦେଖିଲି । ଆଜକାଲି ତିନିବର୍ଷ ହେଲା ସେ ସେହି କୋଠରିରେ ରହି ଆସୁଥିବା କଥା ମୋତେ କହିଲେ । ଯୁବକ ଜଣକ ଖୁବ୍ ବଢ଼ିଆ ଲୋକ । ମୁଁ ତାଙ୍କୁ ଭଲ ଭାବରେ ଜାଣିଛି । ଭାବୁଛି ରେଡ୍ ଯୁ' ମିଲର୍‌ଙ୍କ ଘରେ ରହୁଛି । ଫ୍ରେଡ୍ ମିଲର୍‌ଙ୍କଠାରୁ ଜାଣିଲି ଯେ ତାଙ୍କ ସେଠାକାର ଦୁଇ ନମ୍ବର କୋଠରିଟି ଏକ ଆଶ୍ଚର୍ଯ୍ୟ ଧରଣର କୋଠରି । ସେ କୋଠରିକୁ କେହି କେତେ-ବେଳେ ଯିବାର ଦେଖାଯାଏ ନାହିଁ କି ତା ଭିତରୁ କାହାକୁ କେବେ ଆସୁଥିବାର ଦେଖାଯାଏ ନାହିଁ । ମାତ୍ର ଜଣେ କେହି ଲୋକ ନିଶ୍ଚିତ ଭାବରେ ସେଠାରେ ରହନ୍ତି ଏବଂ ମଦ୍ୟପାନ କରିବାକୁ ସେ ଖୁବ୍ ଭଲ ପାଆନ୍ତି । ଫ୍ରେଡ୍ ନିଜେ ସେ ମଦ୍ୟପୀଙ୍କୁ ଗୀତ ଗାଇବାର ଶୁଣିଛନ୍ତି ।"

ହାକ୍ କହିଲା, "ରେଡ୍ ଯୁ' ତ ଚତୁର ମଦ ପିଏ ।"

"ହାକ୍, ଯାହା କହୁଛି ଶୁଣ । ମୁଁ ମନେ ମନେ ଏକ ଭଲ ଉପାୟ ପାଉଛି । ସେଇ କୋଠରିର ଚଉ ଦରଜାଟି ଏଥିପାଇଁ ଗୋଟିଏ ଚାବିକୁ । ଗୁଡ଼ିକାଠିଟିଏ ପାଇଗଲେ ଆମେ ଅନାୟାସରେ ସେଇ କୋଠରି ଭିତରକୁ ପଶିଯାଇ ପାରିବା । ତୋ ପାଖରେ ଯେତେ ପୁରୁଣା ଗୁଡ଼ିକାଠି ଅଛି ଆଣ । ମୁଁ ମଧ୍ୟ ମୋଠାରେ ଥିବା ଗୁଡ଼ିକାଠିଗୁଡ଼ିକ ଆଣୁଛି । ଏତେଗୁଡ଼ିଏ ଗୁଡ଼ିକାଠି ଭିତରୁ ତାଲା ଖୋଲିବା ପାଇଁ ଆମକୁ କ'ଣ ଗୋଟିଏ ଗୁଡ଼ିକାଠି ମିଳିବ ନାହିଁ ? ମୋର ବିଶ୍ୱାସ, ଆମେ ନିଶ୍ଚିତ ରୂପେ ସେଭଳି ଗୁଡ଼ିକାଠି ପାଇଯିବା । କୌଣସି ଗୋଟିଏ ଅନ୍ଧାରରାତି ଦେଖି ଆମେ ଦରଜା ଖୋଲିବା । ଭିତରେ କ'ଣ ସବୁ ଅଛି ଦେଖିବା । ସମ୍ଭବତଃ ସେମାନେ ଅସରପି ବାକ୍ସଟି ନେଇ ସେଇଠାରେ ରଖିଛନ୍ତି ।"

ପରବର୍ତ୍ତୀ ଅମାବାସ୍ୟା ରାତିରେ ପିଲାଦିହେଁ ଛପି ଛପି ସେଇ ରାସ୍ତାରେ ଅଗ୍ରସର ହେଲେ । ଟମ୍‌ର ପକେଟ୍‌ଗୁଡ଼ିକ ପୁରୁଣା ଗୁଡ଼ିକାଠିରେ ପୂରି ରହିଥାଏ । ତାପରେ ସେ 'ଦୁଇନମ୍ବର'ର ପଛପଟ ଦରଜା ପାଖକୁ ଗଲା । ରାସ୍ତା ମୁଣ୍ଡରେ ହାକ୍ ତାକୁ ଅପେକ୍ଷା କରି ଛିଡ଼ା ହୋଇଥାଏ । ଅନେକ ସମୟ ଗଡ଼ିଗଲା । ତଥାପି ଟମ୍ ଫେରିଲା ନାହିଁ । ହାକ୍ କେତେଆଡ଼ୁ କେତେ କଥା ଭାବିବାରେ ଲାଗିଲା । ତା' ମନକୁ ପାପ ଛୁଇଁଲା । ଡେଉଁ ସୁ' ହାତରେ ତା' ସାଙ୍ଗର ଆଉ ଜୀବନ ଗଲା କି ? ସେ ବିଶେଷ କିଛି ଭାବି ପାରିଲା ନି । କ'ଣ କରିବ ସେ କଥା ମଧ୍ୟ ସ୍ଥିର କରି ପାରିଲା ନି । ସହସା ବିଜୁଳିର ଝଲକ ପରି ତାକୁ ଅତିକ୍ରମ କରି ଟମ୍ ଦୌଡ଼ି ପଳାଇଲା ଆଖିପିଛୁଳାକେ । ଅତିକ୍ରମ କଲାବେଳେ ବଡ଼ପାଟିରେ କହିଦେଲା, "ଦୌଡ଼ !" ହାକ୍ ତା ପଛେ ପଛେ ଦୌଡ଼ିଲା !

ଗାଁ ମୁଣ୍ଡରେ ଗୋଟିଏ ପୁରୁଣା ଖମାର ଥାଏ । ପିଲା ଦୁହିଁ ଦୌଡ଼ ଦୌଡ଼ ଯାଇ ତା' ଭିତରକୁ ପଶିଗଲେ । ଟମ୍‌ର ନିଃଶ୍ୱାସ ବଳେଇ ପଡୁଥାଏ । ତା ମୁହଁରୁ କଥା ବାହାରୁ ନ ଥାଏ । କିଛି ସମୟ ପରେ କହିଲା, "ହାକ୍, ସେ'କି ଭୟାନକ କଥା ! କହିବା-ବେଳକୁ ମୋ ଲୋମମୂଳ ଫୁଲି ଉଠୁଛି । ମୁଁ ତାଲା ଖୋଲିବା ପାଇଁ ଯେତେ ଚାବିକାଠିରେ ଚେଷ୍ଟା କଲି । ମାତ୍ର ଦୁର୍ଭାଗ୍ୟକୁ କୌଣସି ଚାବିକାଠିରେ ତାଲା ଖୋଲିଲା ନାହିଁ । ତାପରେ ଦରଜାରେ ହାତ-ରଖି ସାମାନ୍ୟ ଠେଲି ଦେଲି । ଦରଜା ଖୋଲିଗଲା । ସେଥିରେ ତାଲା ଦିଆଯାଇ ନ ଥିଲା । ମୁଁ ଭିତରକୁ ଗଲି ଏବଂ...ଓଃ !"

"ତା'ପରେ କ'ଣ ହେଲା କହ । ନୀରବ ରହିଲୁ କାହିଁକି ?"

"ମୁଁ ଜୋ' ଇନ୍‌ଜୁନ୍‌ର ହାତଟା ମାଡ଼ି ଦେଲି ।"

"ସେ' ତୁ କ'ଣ କହୁଛୁ ?"

"ହଁ, ହାକ୍ ! ସେ ଯେ ଚଟାଣରେ ଶୋଇଥିବ ଏକଥା ମୁଁ ବା କିପରି ଜାଣିବି ? ଅନ୍ଧାରରେ କିଛି ଦେଖାଯାଉ ନ ଥାଏ । ଯାଉ ଯାଉ ତା ହାତ ଉପରେ ମୋର ପାଦ ପଡ଼ିଗଲା ।"

"ତା'ପରେ ସେ କ'ଣ ଉଠି ବସିଲା ? ସେ କ'ଣ ତୋତେ ଦେଖିଛି ?"

"ନା, ସେ ଉଠି ନାହିଁ କି ମୋତେ ଦେଖି ନାହିଁ । ଖୁବ୍ ମଦ ପିଇଥିଲା ବୋଧହୁଏ ।"

ହାକ୍ କହିଲା, "ସେ ଯେବେ ସେହିପରି ଶୋଇ ରହିଥିବ ତାହାହେଲେ ଅସରଫି ବାକ୍‌ସଟି ଆଣିବାରେ ଆମର କୌଣସି ଅସୁବିଧା ହେବ ନାହିଁ । ତୁ କ'ଣ ଭାବୁଛୁ ?"

"ମୁଁ କିନ୍ତୁ ସେଠାକୁ ଆଉଥରେ ଯିବା ପାଇଁ ପ୍ରସ୍ତୁତ ନୁହେଁ । ଇଚ୍ଛା ହେଉଛି ତ ତୁ ଯାଆ । ରେଡ୍ ସ୍କୁ' ଥିବାବେଳେ ମୁଁ ସେଠାକୁ ଯିବାଲାଗି ରାଜି ନୁହେଁ ।"

"ତାହାହେଲେ ଆମକୁ ଜଗି ରହିବାକୁ ପଡ଼ିବ । ରେଡ୍ ସ୍କୁ' ବାହାରକୁ ଗଲେ ତୁ ଭିତରକୁ ଯାଇ ବାକ୍ସଟି ନେଇ ଆସିବୁ ।"

"ଏଇଟା ତୁ ବୁଦ୍ଧିର କଥା କହିଲୁ, ହାକ୍ ! ତୁ ତ୍ରିଶ ଘଣ୍ଟରେ ସେଠାରେ ଜଗି ବସିଥିବୁ । ରେଡ୍ ସ୍କୁ'କୁ ବାହାରକୁ ଯିବାର ଦେଖିଲେ ମୋତେ ଡାକଦେବୁ । ତୋ ଡାକର ଶୁଣିଲେ ମୁଁ ବାହାରକୁ ଆସିବ । ସେ ସେହି କୋଠରି ଭିତରେ ଥିବା ପର୍ଯ୍ୟନ୍ତ ମୁଁ ଘର ଭିତରେ ଥିବ । ଅପରପି ବାକ୍ସ ତ ଛାର, ସାରା ଦୁନିଆର ଦଉଲତ ଅଜାଡ଼ିଦେଲେ ବି ମୁଁ ବାହାରକୁ ଆସିବ ନାହିଁ ।"

## ବେକାର ବଣଭୋଜି

ଏହାପରେ ଅନେକ ରାତି ବିତିଗଲା । ଟମ୍‌ର ଆଖିକୁ ଭଲ ନିଦ ଆସୁ ନ ଥାଏ । ହାକ୍‌ର ଡାକରାକୁ କାନ ଡେରି ରହିଥାଏ । କିନ୍ତୁ ହାକ୍ ଗଲା କୁଆଡ଼େ ? ତା ଡାକରାକୁ ଶୁଣି ଶୁଣି ଟମ୍‌ର ହତାଶା ବଢ଼ୁଥାଏ । ସହରରେ କିଛିଦିନ ଛୁଟି କଟାଇ ବେକି ଥେଚର ଫେରି ଆସିଥାଏ ଗାଁକୁ । ଅନେକଦିନ ପରେ ତାକୁ ଦେଖି ଟମ୍‌ର ମନରେ ଆନନ୍ଦର ଜୁଆର ଉଠୁଥାଏ । ଦିନେଁ ତାକ ସାଙ୍ଗ-ସାଥୀ ହୁଅନ୍ତି । ଖେଳ-କୌତୁକ ଭିତରେ ଦିନଗୁଡ଼ାକ କଟିଯାଉଥାଏ ସେକଥା କାହାରିକୁ ଜଣାପଡ଼ୁ ନ ଥାଏ । ରେଡ୍ ସ୍କୁ' କଥା

ଆଉ ଅସରଫି ବାକ୍‌ସର ଲପ୍‌ସା ଟମ୍‌ର ମନରୁ ଲଭ ଲଭ ଆସୁଥାଏ ।

ବେକର ବଣଭୋଜ ଦିନ ପହଞ୍ଚିଲା । ସେଥିପାଇଁ ସେ ତାହାର ସବୁ ସାଙ୍ଗଙ୍କୁ ନିମନ୍ତ୍ରଣ କରିଥାଏ । ଠିକ୍ ସମୟରେ ସମସ୍ତେ ଆସି ବେକ ଘରେ ଠୁଳ ହେଲେ । ମିସେସ୍ ଥେଚର କହିଲେ, "ବେକ, ଆଜି ଭୋଜି ଶେଷ ହେଲାବେଳକୁ ତୁ ଥକି ଯାଇଥିବୁ । ତେଣୁ ଘରକୁ ନ ଆସି ରାତିଟା ପାଇଁ ସୁଷାନ୍ ହାର୍‌ପାର୍ ଘରେ ରହିଯିବୁ । ସକାଳୁ ଆସିବୁ । ସେତେବେଳକୁ ତୋର ଥକା ମେଣ୍ଟି ଯାଇଥିବ ।"

ସମସ୍ତେ ସାଙ୍ଗ ହୋଇ ଡଙ୍ଗା ପାଖକୁ ଯାଉଥାନ୍ତି । ବାଟରେ ଟମ୍ ବେକକୁ କହିଲା, "ସୁଷାନ୍ ହାର୍‌ପାର୍‌ଙ୍କ ଘରେ ନ ରହି ବିଧବା ଡୋଗଲସ୍‌ଙ୍କ ପାଖରେ ରହିଲେ ଖୁବ୍ ସୁନ୍ଦର ହେବ । ସେ କେତେ ମଉଜିଆ ମଣିଷ ସେ କଥା ତୋତେ ଅଜଣା ନ ଥିବ । ସେ କି ବଢିଆ ପିଠା ତିଆରି କରନ୍ତି ! ଥରେ ପାଟିରେ ବାଜିଲେ ଆଉ କେବେ ଭୁଲି ହେବ ନାହିଁ । ମୁଁ ମଧ୍ୟ ସେଠାରେ ରହିବି । ସକାଳ ହେଲେ ଦିହେଁଯାକ ସାଙ୍ଗ ହୋଇ ତୁମ ଘରକୁ ଯିବା ।"

ବେକ କହିଲା, "ଏଥିରେ ମୁଁ କଣ କହିବି ? ମାଆ କ'ଣ କହିବେ ? ଏ କଥା ଜାଣିଲେ ସେ ମୋତେ ଖୁବ୍ ବିରକ୍ତ ହୋଇ-ପାରନ୍ତି ।"

ଟମ୍ କହିଲା, "ସେ ବିନ୍ଦୁ ବିସର୍ଗ ଜାଣିପାରିବେ ନାହିଁ ।" ତାପରେ ତାହାର ମନେପଡ଼ିଲା ହାକ୍ କଥା । ଭାବିଲା, "ଆଜି ରାତିରେ ମୋର ଘରକୁ ଫେରିଯିବା ନିତାନ୍ତ ଉଚିତ ହେବ । କିଏ ଜାଣେ ? ହାକ୍ ହୁଏତ କିଛି ଖବର ଧରି ଆଜି ମୋ ପାଖକୁ ଆସି ଯାଇପାରେ । ସେଭଳି ପରିସ୍ଥିତିରେ ମୋତେ ଘରେ ନ ପାଇ ସେ ବ୍ୟତିବ୍ୟସ୍ତ ହୋଇପଡ଼ିବ । ମୁଁ କେଉଁଠାରେ ଅଛି ବୋଲି ସେ

ଜାଣି ପାରିବ ନାହିଁ ।" ପୁଣି ଭାବିଲା, "କାହିଁ, କାଲି ତ ମୋତେ ଡାକିବାକୁ ଆସି ନ ଥିଲା । ତା ପୂର୍ବଦିନ ରାତିରେ ବି ତ ଡାକି ନ ଥିଲା । ତେଣୁ ଆଜି ବି ହୁଏତ ଡାକି ନ ପାରେ ।" ଏହାପରି ଭାବିରେ ନିଜ ମନକୁ ବୁଝାଇ ସେଦିନ ରାତିରେ ଘରକୁ ଯିବ ନାହିଁ ବୋଲି ଟମ୍ ସ୍ଥିର କରି ନେଲା । ବେଙ୍କି ବି ତା ପାଖରେ ରହିବ । ତେଣୁ ରାତିଟା ଖୁବ୍ ସୁଖକର ହେବ ।"

ବେଙ୍କି ଓ ତାହାର ସାଙ୍ଗ-ସାଥୀଙ୍କୁ ଧରି ଡଙ୍ଗା ଚାଲିଲା ନଈ ତଳକୁ ତଳକୁ । ଅନେକ ବାଟ ଯିବା ପରେ ସେମାନେ ଡଙ୍ଗାରୁ ଓହ୍ଲାଇଲେ । ଉପକୂଳରେ ଘନ ଜଙ୍ଗଲ । ତରୁଲତାପୂର୍ଣ୍ଣ ବନଭୂମି ଖୁବ୍ ଶାନ୍ତ ଶୀତଳ ବୋଧ ହେଉଥାଏ । ଟାଣୁଆ ଖରାରେ ରହି ପିଲାଗୁଡ଼ାଙ୍କର ମୁହଁ-କାନ ଝାଉଁଳି ପଡ଼ୁଥାଏ । ବଣ ଭିତରକୁ ଯିବା ପରେ ସତେ ଯେପରି ସମସ୍ତଙ୍କ ଦେହରେ ଜୀବନ ପଶିଲା । ଖାଇବା ଜିନିଷ ପ୍ରସ୍ତୁତ ହେବା ପର୍ଯ୍ୟନ୍ତ ସେମାନେ ଖେଳିବାରେ ଲାଗିଲେ । ଖାଦ୍ୟ ପ୍ରସ୍ତୁତ ହେଲାବେଳକୁ ଭୋକରେ ପ୍ରତ୍ୟେକ ପିଲାର ପେଟ ଜଳୁଥାଏ । ଗଛତଳେ ପ୍ରତ୍ୟେକେ ଚକା ପକାଇ ବସିଗଲେ ଏବଂ ମନଇଚ୍ଛା ଯିଏ ଯେତେ ପାରେ ଖାଇବାରେ ଲାଗିଲେ ।

ବଣ ଭିତରେ ଗୋଟିଏ ବଡ଼ିଆ ଗୁମ୍ଫା ଥାଏ । ଖାଇସାରିବା ପରେ ସବୁଯାକ ପିଲା ମିଶି ସେଠାକୁ ବୁଲିବାକୁ ଗଲେ । ସେଇଟା ଥାଏ ପିଲାମାନଙ୍କର ଏକ ଦୁଃସାହସିକ ପଦଯାତ୍ରା । ଦୁନିଆଯାକର ଅନ୍ଧାର ଗୁମ୍ଫା ଭିତରେ ଜମାଟ ବାନ୍ଧି ଥାଏ । ଜାଗାଟା ଖୁବ୍ ଥଣ୍ଡା ଲାଗୁଥାଏ । ହାତରେ ଗୋଟିଏ ଗୋଟିଏ ଜଳନ୍ତା ମହମବତୀ ଧରି ପିଲାମାନେ ଭିତରକୁ ଯାଉଥାନ୍ତି । ଗୁମ୍ଫା ଭିତରେ ବିଭିନ୍ନ ଦିଗକୁ

ଯିବା ପାଇଁ ରାସ୍ତା ଥାଏ । ଯାହାର ଯେଉଁଆଡ଼କୁ ଯିବାର ଇଚ୍ଛା ସେ ସେଇଆଡ଼େ ଯାଉଥାଏ । କାଳେ କଏ କେଉଁଠି ହଜିଯିବ ସେଇ ଭୟରେ କେହ ବେଶୀଦୂରକୁ ଯାଉ ନ ଥାଏ । ସେମାନେ ବହୁତ ସମୟ ଧରି ଗୁମ୍ଫା ଭିତରେ ରହିଲେ । କାରଣ ଜାଗାଟା ସମସ୍ତଙ୍କୁ ବଢ଼ିଆ ଲାଗୁଥାଏ । ଓଠରେ ହସ ଧରି ସମସ୍ତେ ଭିତରୁ ବାହାରି ଆସିଲେ । ସମସ୍ତେ ଗୁଣୁ ଗୁଣୁ ହୋଇ କିଛି ନା କିଛି ଗୀତ ଗାଇବାରେ ଲାଗିଥାନ୍ତି । ସମସ୍ତଙ୍କ ମନରେ ଅପୂରନ୍ତ ଆନନ୍ଦର ଉଚ୍ଛ୍ୱାସ । ସୂର୍ଯ୍ୟ ବୁଡ଼ିଲେ । ଅନ୍ଧାର ମାଡ଼ିଆସିଲା ଚାରିପଟେ । ପିଲାମାନେ ଡଙ୍ଗାକୁ ଫେରିଲେ । ନଙ୍କା ଉପରକୁ ଉପରକୁ ଉଠିଲା ଡଙ୍ଗା । ଓଠରେ ହସ ଆଉ ମୁହଁରେ ଗୀତ ଧରି ସବୁଯାକ ପିଲା ଫେରିଲେ ଗାଁକୁ । ସେ ଦିନଟା କି ମଜାର ଦିନ ପିଲାମାନଙ୍କର !

## ହାକ୍ ବିଧବା ଡୋଗଲସ୍‌ଙ୍କର ଜୀବନ ରଖିଲା

ସେଦିନ ରାତିରେ ପାନ୍ଥଶାଳା ପଛପଟେ ଥିବା ରାସ୍ତାଧାରରେ ହାକ୍ ଲୁଚି ବସିଲା । ରାତି ୧୧ଟା ବେଳେ ପାନ୍ଥଶାଳାର ଆଲୁଅଯାକ ଲିଭିଗଲା । ହାକ୍ ଭାବିଲା, "ଏବେ ସମସ୍ତେ ଶୋଇଲେଣି । ମୁଁ ମଧ୍ୟ ଶୋଇବାକୁ ଯିବି ।" ଠିକ୍ ସେତିକିବେଳେ ପାନ୍ଥଶାଳା ଭିତରୁ ଏକ ଅଟ୍ପଷ୍ଟ ଶବ୍ଦ ଆସି ତାହାର କାନରେ ବାଜିଲା । ଜଣେ ଦରଜା କବାଟ ଧୀରେ ଧୀରେ ବନ୍ଦ କଲା । ରାସ୍ତା ଉପରେ ଜଣେ କାହାକୁ ଆସ୍ତେ ଆସ୍ତେ ଆସୁଥିବାର ଶୁଣିଲା । ହାକ୍ ଦ୍ରୁତଗତିରେ ତାହାର ଲୁଚିବା ଜାଗାକୁ ଚାଲିଗଲା ।

ଦୁଇଜଣ ଲୋକ ତାକୁ ଅତିକ୍ରମ କରି ଚାଲିଗଲେ । ସେମାନଙ୍କ ଭିତରୁ ଜଣେ ଟୋକିଏ ଓଜନିଆ ବାକ୍‌ସ ଧରି ଥାଏ । ହାକ୍

ଭାବିଲା, "ଏଇଟା ଅସରପି ବାକ୍ସ ହେବ ବୋଧହୁଏ । ସେମାନେ ଏହା ନେଇ ଅନ୍ୟତ୍ର ଚାଲି ଯାଉଛନ୍ତି । ସମ୍ଭବତଃ ଅନ୍ୟ କେଉଁଠି ଏହା ଲୁଚାଇବାର ଯୋଜନା କରିଛନ୍ତି । ମୋତେ ସେମାନଙ୍କ ପଛେ ପଛେ ଯିବାକୁ ପଡ଼ିବ ।" କିଛି ସମୟ ଧରି ଲୋକ ଦୁଇଜଣ ନଈ ଧାରେ ଧାରେ ଚାଲିଲେ । ତା ପରେ ବାଟଭାଙ୍ଗି ସେମାନେ ପାହାଡ଼ ଉପରକୁ ଉଠିଲେ । ହାକ୍ ସେମାନଙ୍କ ପଛେ ପଛେ ଚାଲିଥାଏ । ଆକାଶରେ ଜହ୍ନ ନ ଥାଏ । କଳା କଟିକଟି ଅନ୍ଧାରରେ ମୁହଁକୁ ମୁହଁ ଦେଖାଯାଉ ନ ଥାଏ । ଏଇଭଳି ରାତି ହାକ୍‌କୁ ଖୁବ୍ ସାହାଯ୍ୟ କରୁଥାଏ ।



ଲୋକମାନେ ବିଧବା ଡୋଗଲସ୍‌ଙ୍କ ଘରକୁ ଆସିଲେ । ସେମାନେ ଛୁଡ଼ା ହେଲେ । ହାକ୍ ମଧ୍ୟ ଛୁଡ଼ା ହେଲା ସେମାନଙ୍କର ଅନତି ଦୂରରେ । ସେମାନଙ୍କର କଥା ସେ ପରିଷ୍କାର ଭାବରେ ଶୁଣି ପାରୁଥାଏ ।

"ବିଧବାଟିର କୋଠରିରେ ଆଲୁଅ ଜଳୁଛି । ତା ସହିତ କେହି ଜଣେ ନିଶ୍ଚୟ ରହିଛି ।" —କଥା କହିବାର ଢଙ୍ଗରୁ ଇନ୍‌ଜୁନ୍‌ ଜୋଙ୍କୁ ଖୁବ୍ ବିରକ୍ତ ଥିବାପରି ଜଣାପଡ଼ୁଥାଏ ।

"ଆଜି ରାତିରେ କିଛି କରିବା ସମ୍ଭବପର ନୁହେଁ । ଚାଲ, ଫେରିଯିବା । ପଛକଥା ଭୁଲିଯିବା ଭଲ ।"

"କ'ଣ କହିଲୁ, ଭୁଲିଯିବି !" ଚିତ୍କାର କରି ଉଠିଲା ଇନ୍‌ଜୁନ୍‌ ଜୋ । "ନା, ନା, କେବେହେଲେ ନୁହେଁ । ସେକଥା ଭୁଲିବା ମୋ ଦେଇ ସମ୍ଭବପର ନୁହେଁ । ତାହାର ସ୍ୱାମୀ ମୋତେ ଜେଲଖାନାରେ ପୂରାଇଥିଲା । ସେଠାରୁ ବାହାରିବା ପରେ ମୋର ପ୍ରଥମ କାମ ହେଲା ତାକୁ ମାରିବା । ମାତ୍ର ତା'ର ସୌଭାଗ୍ୟ ଯେ ମୁଁ ପହଞ୍ଚିବା ଆଗରୁ ସେ ଆରପୁରକୁ ବାଟ କାଟି ସାରିଛି । ତାହା ବୋଲି କ'ଣ ମୁଁ ପ୍ରତିଶୋଧ ନ ନେଇ ଛାଡ଼ିଦେବି ? ତା' ଯିବା ରାସ୍ତାରେ ତାହାର ସ୍ତ୍ରୀକୁ ପଠାଇଦେଇ ପାରିଲେ ମୋର ପ୍ରତିଶୋଧ ନେବା ସାର୍ଥକ ହେବ । ମୁଁ ଆଜି ରାତିରେ ତାକୁ ହତ୍ୟା କରିବି ।"

"ସେଠାରେ ଜଣେ କେହି ଅଛି !"

ତା କଥାକୁ କର୍ଣ୍ଣପାତ ନ କରି ଇନ୍‌ଜୁନ୍‌ ଜୋ କହିଲା, "ହୁଏତ ମୁଁ ତାକୁ ହତ୍ୟା ନ କରିପାରେ । ନା, ସେ କାମ କରିବି ନାହିଁ । ତାହା ନ କରି ତା'ର ନାକ-କାନ କାଟି ମୁହଁଟାକୁ ଏପରି ବିକୃତ କରିଦେବି ଯେ ଯିଏ ଦେଖିବ ନ ହସି ରହିପାରିବ ନାହିଁ । ସେଇଟା ତା ପାଇଁ ଉଚିତ ଶାସ୍ତି ହେବ !"

ତା ପରେ ତାହାର ସାଙ୍ଗକୁ ଶୁଣି କହିଲା, "ଏ କାମରେ ତୋତେ ସାହାଯ୍ୟ କରିବାକୁ ପଡ଼ିବ । ତାହା ଯେବେ ନ କରୁ ତାହାହେଲେ ତୋର ମୃତ୍ୟୁ ସୁନିଶ୍ଚିତ ବୋଲି ଜାଣି ରଖ ।"

ଏକଥା ଶୁଣିବା ପରେ ଅନ୍ୟ ଲୋକଟିର ମନରେ ଆତଙ୍କ ଜାତ ହେଲା । କହିଲା, "ଯାହା କରିବାର କଥା ଶୀଘ୍ର ଶୀଘ୍ର ଶେଷ କର । ଆଉ ଅପେକ୍ଷା କରୁଛୁ କାହାକୁ ?"

"ଏଇ ଆଲୁଅତକ ଲିଭିବା ପର୍ଯ୍ୟନ୍ତ ମୋତେ ଅପେକ୍ଷା କରିବାକୁ ପଡ଼ୁଛି ।" ଏହିପରି କେତେଗୁଡ଼ିଏ ଭୟଙ୍କର କଥା କହିସାରି ଦୁହେଁଯାକ ନୀରବ ହେଲେ । ଆଲୁଅ ଲିଭିବାକୁ ଅପେକ୍ଷା କରି ସେମାନେ ଛିଡ଼ା ହୋଇଥାନ୍ତି ।

ଏକ ଅଜଣା ଭୟରେ ଶିହରି ଉଠିଲା ହାକ୍ । ଧୀରେ ଧୀରେ ସେହି ସ୍ଥାନରୁ ଖସି ପଳାଇ ଆସିଲା । ତା ପରେ ଦୌଡ଼ିଲା ଏକ-ନିଶ୍ୱାସରେ । ଦୌଡ଼ି ଦୌଡ଼ି ଯାଇ ପହଞ୍ଚିଲା ମିଃ ଜୋନ୍‌ସଙ୍କ ଘରେ । ମିଃ ଜୋନ୍‌ସ ବୃଦ୍ଧ । ସାହସୀ ଏବଂ ସାଧୁ ପ୍ରକୃତିର ଲୋକ । ହାକ୍ ତାଙ୍କ ଦରଜାରେ ଆଘାତ କଲା ।ପାଟି କରି କହୁଥାଏ, "ଦୟାକରି ଦରଜା ଖୋଲନ୍ତୁ । ମୁଁ ବିପନ୍ନ । ମୋତେ ସାହାଯ୍ୟ କରନ୍ତୁ ।"

ବୃଦ୍ଧଙ୍କର ନିଦ ଭାଙ୍ଗିଗଲା । ଶୋଇବା କୋଠରିର ଝରକା ବାଟେ ପଚାରିଲେ, "କ'ଣ ହେଲା ?" ତା ପରେ ସେ ତାଙ୍କର ଦୁଇଜଣ ଖୁବ୍ ମଜଭୁତ ପୁଅଙ୍କୁ ସାଙ୍ଗରେ ଧରି ତଳକୁ ଓହ୍ଲାଇଲେ । ଦରଜା ଖୋଲି ବୃଦ୍ଧ ପ୍ରଥମେ ହାକ୍‌କୁ ଦେଖିଲେ ।

ହାକ୍ କହିଲା, "ଦୟାକରି ମୋତେ ଭିତରକୁ ଯିବାକୁ ଦିଅନ୍ତୁ । ଏକ ଭୟାନକ କାଣ୍ଡ ଘଟିବାକୁ ଯାଉଛି ।"

"ଭିତରକୁ ଆସି କ'ଣ ହୋଇଛି କହ ।"

ଭିତରକୁ ଯାଇ ହାକ୍ ସବୁକଥା କହିଲା ।

ଦୁଇ ତିନି ମିନଟ୍ ଭିତରେ ସମସ୍ତେ ପ୍ରସ୍ତୁତ ହୋଇଗଲେ । ପୁଅ ଦୁହିଁଙ୍କୁ ସାଙ୍ଗରେ ଧରି ବୃଦ୍ଧ ଦୌଡ଼ିଲେ ବିଧବା ଡୋଗଲସ୍‌ଙ୍କ ଘରକୁ । ପ୍ରତ୍ୟେକଙ୍କ ହାତରେ ଗୋଟିଏ ଲେଖାଏଁ ବନ୍ଧୁକ ଥାଏ । ହାକ୍ ସେମାନଙ୍କ ସାଙ୍ଗରେ ଗଲା ନାହିଁ । ପରିଣାମ କ'ଣ ହେବ ଦେଖିବା ପାଇଁ ସେ ଗୋଟିଏ ଜାଗାରେ ଛପି ରହିଲା । ସହସା ବନ୍ଧୁକର ଆବାଜ୍ ତାହାର କାନରେ ବାଜିଲା । ଲୁଚିବା ଜାଗାରୁ ଉଠି ମାତି ହାକ୍ ଦୌଡ଼ିଲା ଖୁବ୍ ଦ୍ରୁତଗତିରେ ।

## ହାକ୍ ସାଙ୍ଗମାନଙ୍କ ପାଖରେ ପହଞ୍ଚିଲା

ତା ପରଦିନ ବଡ଼ ସକାଳେ ହାକ୍ ପୁଣି ଯାଇ ମିଃ ଜୋନ୍‌ସଙ୍କ ଘର ଦରଜାରେ ଆଘାତ କଲା । ଆଦର କରି ବୃଦ୍ଧ ତାକୁ ଭିତରକୁ ଡାକିଲେ । ଭିତରକୁ ଗଲା ପରେ କହିଲେ, "ହାକ୍, ତୁ ବାସ୍ତବିକ ଖୁବ୍ ସାହସୀ । ତୋ ପାଇଁ ଏ ଘରର ଦରଜା ସବୁଦିନ ଲାଗି ଖୋଲା ରହିଲା । ମାଙ୍ଗ ହୋଇ ଜଳଖିଆ ଖାଇବା ଆ । କଥା ମାନି ହାକ୍ ଯାଇ ଟେବୁଲ ଧାରରେ ବସିଲା । କିନ୍ତୁ କିଛି ଖାଇ ପାରିଲା ନାହିଁ । ମିଃ ଜୋନ୍‌ସ କହିଲେ, "ତୁ କେମିତି ଅସୁସ୍ଥ ଦେଖାଯାଉଛୁ । କେବଳ ଗୋଟିଏ କପ୍ ଟି' ପିଇଦେ ।" ତାପରେ ସେ ରାତିରେ ଯାହାହେଲା ସେ କଥା ବର୍ଣ୍ଣନା କରିବାକୁ ଯାଇ କହିଲେ, "ଆମେ କୌଣସିମତେ ସେମାନଙ୍କୁ ଧରି ପାରିଲୁ ନାହିଁ । ମାତ୍ର ଜଣଙ୍କ ଉପରେ ଗୁଳି ବାଜିଛି । ସେ ବେଶୀଦୂର ଯାଇପାରି ନ ଥିବ ।

ଆମେ ଗାଁରେ ଲୋକମାନଙ୍କୁ କହି ଦେଇଛୁ । ସେମାନେ ସେଇ ସଇତାନ ଦୁଇଟାଙ୍କୁ ଖୋଜି ଖୋଜି ବଣ ଭିତରକୁ ଯାଇଛନ୍ତି । ଆଚ୍ଛା, ସେହି ଲୋକଦୁଇଟା ଦେଖିବାକୁ କିପରି ?''

ହାକ୍ ଧୀରେ ଧୀରେ କହିଲା, "ସେମାନଙ୍କ ଭିତରୁ ଜଣେ ହେଉଛି ସେଇ ସ୍ପେନୟାର୍ଡ । ଅନେକ ସମୟରେ ଗାଁରେ ଘୂରି ବୁଲେ । ଆପଣ କ'ଣ ତାକୁ ଦେଖି ନାହାନ୍ତି ? ମୁଣ୍ଡରେ ଲମ୍ବା ଲମ୍ବା ପାଚିଲା ଧଳା ବାଳ । ଜଡ଼ାଟାଏ । ଠାରେ । କଥା କହି-ପାରେ ନା । ଅନ୍ୟ ଲୋକଟିର ପରିଚୟ ମୁଁ ଜାଣେ ନା । ଲୋକଟା ଡେଙ୍ଗା । ପତଳା । ଖୁବ୍ ପୁରୁଣା ପୋଷାକ ସବୁ ପିନ୍ଧେ ।

ମିଃ ଜୋନ୍ସ କହିଲେ, "ମୁଁ ସେମାନଙ୍କୁ ଜାଣେ । ତୁ ସେମାନଙ୍କ ପଛେ ପଛେ ଯାଉଥିଲୁ କାହିଁକି ?''

"ନିଦ ନ ହେବାରୁ ମୁଁ ବାହାରେ ବୁଲୁଥିଲି । ଏହିପରି ସମୟରେ ସେହି ଦୁଇଜଣଙ୍କୁ ଦେଖିଲି । ସେମାନଙ୍କ ମଧ୍ୟରୁ ଜଣେ ଗୋଟିଏ ଓଜନିଆ ବାକ୍ସ ଧରି ଯାଉଥାଏ । ତାହା ଚୋରି କରି ନେଉଛି ଭାବି ମୁଁ ତା ପଛେ ପଛେ ଯାଉଥାଏ । ସେମାନେ ନଈ-ଆଡ଼କୁ ଗଲେ । ତା ପରେ ସେମାନେ ବାଟ ଭାଙ୍ଗି ବିଧବା ଡୋଗଲସ୍‌ଙ୍କ ଘରକୁ ଯାଇଥିବା ରାସ୍ତା ଧରିଲେ । ମୁଁ ସବୁବେଳେ ସେମାନଙ୍କର ପାଖରେ ରହିଥାଏ । ତେଣୁ ସେମାନଙ୍କର ପ୍ରାୟ ସବୁକଥା ମୋ କାନରେ ବାଜୁଥାଏ । ବିଧବା ଡୋଗଲସ୍‌ଙ୍କ ଘରେ ପହଞ୍ଚି ସେମାନେ ଛିଡ଼ା ହେଲେ । ସେମାନେ କଥାବାର୍ତ୍ତା ହେବାରେ ଲାଗିଥାନ୍ତି । ସେଇ ସ୍ପେନୟାର୍ଡ଼ ଜଣକ କହୁଥାଏ, 'ମୁଁ ତାହାର ନାକ କାନ କାଟି ଦେବି ।' ତା ପରେ......''

ମିଃ ଜୋନ୍ସ ପଚାରିଲେ, "ତୁ ପରା କହୁଥିଲୁ ଯେ ସେହି ସ୍ପେନୟାର୍ଡ଼ ଜଣକ ଜଡ଼ା ?''

"ନା, ନା, ମୋର ଭୁଲ ହୋଇଗଲା । ସେ କହି ନାହିଁ !"
ହାକ୍ ନୀରବ ହେଲା । ସେ କହୁ କହୁ ବୃଦ୍ଧଙ୍କୁ ନ କହିବା କଥା କହି ସାରିଲାଣି । କାଳେ କିଛି ଅଘଟଣ ହୋଇଯାଇପାରେ ବୋଲି ତା' ମନରେ ଭୟ ହେଲା ।

ବୃଦ୍ଧ ପଚାରିଲେ, "ସେହି ଲୋକଟା କିଏ ? ତାର ପ୍ରକୃତ ପରିଚୟ କ'ଣ ? କୌଣସି କଥାକୁ ଭୟ ନ କରି କହ । ଆମେ ସମସ୍ତେ ତୋର ନିଜର ଲୋକ । ଆମକୁ ଅବିଶ୍ୱାସ କରିବାର କୌଣସି କାରଣ ନାହିଁ ।" ସେ ଏପରି ଆପଣାର ମଣିଷ ଭଳି ପଚାରିଲେ ଯେ ହାକ୍ ତାଙ୍କ ଆଗରେ ସତକଥା ଲୁଚାଇ ପାରିଲା ନାହିଁ । କହିଲା, "ସେ ହେଉଛି ରେଡ୍ ଯୁ' !"

ଏଭଳି ଗୋଟିଏ ନାଁ ଶୁଣିବେ ବୋଲି ବୃଦ୍ଧ ପ୍ରସ୍ତୁତ ନ ଥିଲେ । ଏକ ଅଜଣା ଉତ୍ତେଜନାରେ ଚମକିତ ହୋଇ ପଚାରିଲେ, "ତୁ କାହାର ନାଁ କହିଲୁ ! ରେଡ୍ ଯୁ' !"

ବୃଦ୍ଧ ତାଙ୍କର କାନକୁ ବିଶ୍ୱାସ କରିପାରିଲେ ନି । ପୁଣି ପଚାରିଲେ, "ତୁ କାହାର ନାଁ ଧରିଲୁ । ରେଡ୍ ଯୁ' !"

"ହଁ, ରେଡ୍ ଯୁ' !"

"ତୁ ଠିକ୍ କହୁଛୁ ତ ?"

"ହଁ, ମୁଁ ତା'ର କଣ୍ଠସ୍ୱରରୁ ତାକୁ ଭଲ ରୂପେ ଚିହ୍ନି ପାରିଛି ।"

ବୃଦ୍ଧ ତାଙ୍କର ଭାବନାକୁ ପ୍ରକାଶ କଲାଭଳି ଭାଷା ପାଇଲେ ନାହିଁ । ତାଙ୍କ ପୁଅମାନେ ଖାଇବା ବନ୍ଦ କରିଦେଲେ । ଆଁ କରି ଚାହିଁ ରହିଲେ ହାକ୍‌ର ମୁହଁକୁ ।

ଶେଷରେ ବୃଦ୍ଧ କହିଲେ, "ବର୍ତ୍ତମାନ ମୁଁ ବୁଝୁଛି......"
ସେତିକିବେଳେ ବିଧବା ଡୋଗଲସ୍ ଘର ଭିତରକୁ ଆସିଲେ ।

ଡକାଏତମାନଙ୍କ କଥା ପଗ୍ଚରି ବୁଝିବାଲାଗି ସେ ଆସିଥାନ୍ତି । ସେମାନଙ୍କର କ'ଣ ହେଲା ସେ କଥା ଜାଣିବା ପାଇଁ ତାଙ୍କର ଖୁବ୍ ଇଚ୍ଛା ହେଉଥାଏ । ମିଃ ଜୋନ୍ସ ଏବଂ ତାଙ୍କର ପୁଅମାନେ ବିଧବା ଡୋଗଲସ୍‌ଙ୍କ ଆଗରେ ଡକାଏତମାନଙ୍କ କଥା ବର୍ଣ୍ଣନା କଲେ । ସେମାନଙ୍କ କଥା ଶୁଣି ଭୟରେ ଡୋଗଲସ୍‌ଙ୍କ ସର୍ବାଙ୍ଗ ଥରିବାରେ ଲଗିଲା । "ଆପଣଙ୍କଠାରେ କୃତଜ୍ଞତା ଜଣାଇବା ଭଳି ଭାଷା ମୋର ନାହିଁ ।" ଆଖିଯୋଡ଼ିକ ତାଙ୍କର ଲୁହରେ ଛଳ ଛଳ ହେଲା । "ଆପଣ ମୋର ଜୀବନ ରକ୍ଷା କରିଛନ୍ତି ।"

ବୃଦ୍ଧ କହିଲେ, "ମୋତେ ଧନ୍ୟବାଦ ଜଣାଇବା ଅନାବଶ୍ୟକ । କାରଣ ମୋ ଯୋଗୁଁ ତୁମର ଜୀବନ ରକ୍ଷା ହୋଇ ନାହିଁ । ତାହା ହୋଇଛି....." ସେ ଆଉ କିଛି ନ କହି ହଠାତ୍ ନୀରବ ହେଲେ । ସେ କହିବାକୁ ଚାହିଁଥିଲେ, "ତାହା କେବଳ ହାକ୍ ଯୋଗୁ ହୋଇପାରିଛି । ସେ ହିଁ ତାଙ୍କର ଜୀବନ ରଖିଛି ।" କିନ୍ତୁ ହାକ୍‌ର ନାଁ ଲୁଚାଇ ରଖିବାକୁ ସେ ତାହାଠାରେ ପ୍ରତିଜ୍ଞାବଦ୍ଧ ଥିଲେ । ତା ନାଁ କହିଦେଲେ କାଳେ ସେ ଅଧିକ ଅଡୁଆରେ ପଡ଼ିଯିବ ତାଙ୍କ ମନକୁ କାହିଁକି ସେହିଭଳି ଏକ ଭୟ ଛୁଇଁଲା ।

## ଟମ୍ ଏବଂ ବେକ କେଉଁଆଡେ ହଜିଗଲେ

ରବିବାରର ଏକ ସୁନ୍ଦର ସକାଳ । ଗାଁର ପ୍ରାୟ ପ୍ରତ୍ୟେକ ଲୋକ ଗୀର୍ଜାକୁ ଯାଇଥାନ୍ତି । ଉପାସନା ପରେ ସେମାନେ ଗୀର୍ଜାରୁ ବାହାରି ଆସିଲେ । ଗୀର୍ଜାର ଦରଜା ପାଖରେ ଦଳ ଦଳ ହୋଇ ସମସ୍ତେ ଛିଡ଼ା ହୋଇଥାନ୍ତି ଏବଂ ପରସ୍ପର ମଧ୍ୟରେ ଖୁସି ଗପ

କରିବାରେ ଲଗିଥାନ୍ତି । ମିସେସ୍ ହାର୍‌ପାର୍‌ଙ୍କୁ ଦେଖି ମିସେସ୍ ଥେଚର ତାଙ୍କ ପାଖକୁ ଗଲେ । ହସି ହସି କହିଲେ, "ଗତକାଲି ରାତିରେ କଷ୍ଟ କରି ବେକିର ଯତ୍ନ ନେଇଥିବାରୁ ମୁଁ ଖୁବ୍ ଖୁସି ହେଲି । ଗୋଟିଏ ରାତି ପାଇଁ ହେଲେ ବି ନିଜକୁ କଷ୍ଟ ଦେଇ ତୁମେ ଯେ ଝିଅଟିର କଥା ବୁଝିଛ ସେଥିପାଇଁ ମୁଁ ତୁମକୁ ଧନ୍ୟବାଦ ନ ଦେଇ ରହିପାରୁନି ।"

ଏକଥା ଶୁଣି ବିସ୍ମିତ ହେଲେ ମିସେସ୍ ହାର୍‌ପାର୍ । କହିଲେ, "ବେକି ! ମୋ ଘରେ ! ଇସ୍ପେ ସବୁ ତୁମେ କଣ କହୁଛ, ଭଉଣୀ !"

ଶଙ୍କିତଭାବରେ ମିସେସ୍ ଥେଚର ପଚାରିଲେ, "କାହିଁକି ? ବେକି କ'ଣ କାଲି ରାତିରେ ତୁମ ଘରଠାରେ ନ ଥିଲା ?"

"ନା, ମୁଁ ତ ବେକିକୁ କେତେବେଳେ ହେଲେ ଦେଖି ନାହିଁ ।"

ଏ କଥା ଶୁଣିବାକ୍ଷଣି ମିସେସ୍ ଥେଚରଙ୍କର ମୁଖମଣ୍ଡଳ ମଉଳିଗଲା । ଗୋଡ଼ ଦୁଇଟା ଥରିବାରେ ଲାଗିଲା । ସେ ଛିଡ଼ା ହୋଇ ପାରିଲେ ନାହିଁ । ନିଥ୍ କନା ବସି ପଡ଼ିଲେ ସେଇଠାରେ । ପୋଲି ମାଉସୀ ଆସି ସେମାନଙ୍କ ପାଖରେ ପହଞ୍ଚିଲେ । କହିଲେ, "ଟମ୍ ଏ ପର୍ଯ୍ୟନ୍ତ ଘରକୁ ଫେରି ନାହିଁ । ତାହାରି ଚିନ୍ତା କରି କରି ମୁଁ ଅସ୍ଥିର ହୋଇ ପଡ଼ିଛି । ମନକୁ ସନ୍ଦେହ ଲାଗୁଛି, ସେ ପୁଣି ଥରେ ଲୁଆଡ଼େ ପଳାଇଲାଣି କି ? ଗତକାଲି ରାତିରେ ସେ ତୁମ ଘରେ ଶୋଇଥିଲା କି ମିସେସ୍ ହାର୍‌ପାର୍ ?"

"ନା' ସେ ତ କାଲି ରାତିରେ ଆମ ଘରେ ନ ଥିଲା ? ଯୋ' ହାର୍‌ପାର୍‌କୁ ଚାହିଁ ପୋଲି ମାଉସୀ ପଚାରିଲେ, "ଟମ୍ କେଉଁଠାରେ ଅଛି, ସେ କଥା ଜାଣିଛୁ କି ?

"ନା, ମୁଁ ତା କଥା କିଛି ଜାଣେ ନାହିଁ । ସେ ଆମ ସମସ୍ତଙ୍କ ସାଙ୍ଗରେ ବନଭୋଜିକୁ ଆସିଥିବା କଥା ମାତ୍ର ଜାଣିଛି । ତା ପରେ..."

"ଫେରନ୍ତା ଡଙ୍ଗାରେ ତାକୁ ଦେଖିଥିଲୁ କି ?"

ସୁ କିଛି ସମୟ ପାଇଁ ଚିନ୍ତା କଲା । ତା ପରେ କହିଲା, "ନା, ଫେରନ୍ତା ଡଙ୍ଗାରେ ମୁଁ ତାକୁ ଦେଖି ନାହିଁ ।"

ପୋଲି ମାଉସୀ ଅନ୍ୟାନ୍ୟ ବହୁତ ପିଲାଙ୍କୁ ସେ ବିଷୟରେ ପଚାରିଲେ । କିନ୍ତୁ କେହି ଜଣେ ହେଲେ ପିଲା ଟମ୍ ବା ବେକକୁ ଫେରନ୍ତା ଡଙ୍ଗାରେ ଦେଖିଥିବା କହିଲେ ନାହିଁ ।

ପୋଲି ମାଉସୀ ଚିତ୍କାର କରି କହିଲେ, "ହାୟ ! ହାୟ ! ସେମାନେ ସେଇ ଗୁମ୍ଫା ଭିତରେ କୁଆଡ଼େ ହଜିଗଲେ ।"

ପ୍ରତ୍ୟେକେ କହିଲେ ଯେ ସେମାନେ ସେଇ ଗୁମ୍ଫା ଭିତରେ ବାଟବଣା ହୋଇଗଲେ । ଗାଁ ଲୋକମାନେ ସେମାନଙ୍କୁ ଖୋଜିବା ପାଇଁ ସଙ୍ଗେ ସଙ୍ଗେ ପ୍ରସ୍ତୁତ ହେଲେ । ଶହ ଶହ ଦୁଇଶହ ଲୋକ ରାସ୍ତା ଉପରେ ଜମା ହୋଇଗଲେ । ବେକର ବାପା ଜଜ୍ ଥେଚର ସମସ୍ତଙ୍କୁ ସାଙ୍ଗରେ ନେଇ ଗୁମ୍ଫାଆଡ଼କୁ ଅଗ୍ରସର ହେଲେ । ଏହାପରେ ଅନ୍ୱେଷଣ ଆରମ୍ଭ ହେଲା ।

ସ୍ତ୍ରୀ ଲୋକମାନେ ଘରେ ଅପେକ୍ଷା କରି ବସିଥାନ୍ତି । ଏକ ଅଜଣା ଆତଙ୍କରେ ସମସ୍ତଙ୍କ ଛାତି ଥରୁଥାଏ । ସମସ୍ତେ ରାତିଯାକ ଅପେକ୍ଷା କରି ବସିଥାନ୍ତି । କିନ୍ତୁ କୌଣସି ଖବର ମିଳିଲା ନାହିଁ । ରାତି ପାହିଲା । ଆଉକିଛି, ମହମବତୀ, ଦଉଡ଼ି ଏବଂ ଖାଦ୍ୟ ପଠାଇଦେବା ପାଇଁ ଜଜ୍ ଥେଚର ଖବର ପଠାଇଲେ । ସେତିକି ଖବର ଭିନ୍ନ ଆଉ କୌଣସି ଆଶାଜନକ ଖବର କାହାରି କାନରେ ବାଜିଲା

ନାହିଁ । ଦୁଃଖରେ ମିସେସ୍ ଥେଚର ଭାଙ୍ଗି ପଡ଼ିଲେ । ପୋଲି ମାଉସୀଙ୍କୁ ଲଗିଲା ଯେପରି ତାଙ୍କର ହୃଦୟ ବିଦୀର୍ଣ୍ଣ ହୋଇଯିବ !

ବିଧବା ଡୋଗଲସ୍ ପୁଣି ମିଃ ଜୋନ୍‌ସଙ୍କ ଘରକୁ ଗଲେ । ହାକ୍ ସେଠାରେ ଗୋଟିଏ ବିଛଣାରେ ଶୋଇଥାଏ । ସେ ଅସୁସ୍ଥ ହୋଇ ପଡ଼ିଥାଏ । ଦେହରେ ଜ୍ୱର ପୂରି ରହିଥାଏ । ଗାଁ ଡାକ୍ତର ଗୁମ୍ଫାରେ ଥା'ନ୍ତି । ତେଣୁ ବିଧବା ଡୋଗଲସ୍‌ଙ୍କୁ ହାକ୍‌ର ଯତ୍ନ ନେବାକୁ ହେଲା । ଖୁବ୍ ଯତ୍ନର ସହିତ ସେ ତା'ର ସେବା କରିବାରେ ଲାଗିଥାନ୍ତି ଠିକ୍ ମାଆ ଯେପରି ପୁଅର ଯତ୍ନ ନିଏ ।

ସେଦିନ ସନ୍ଧ୍ୟାବେଳକୁ ଖବର ପହଞ୍ଚିଲା ଲୋକମାନେ ପିଲା-ଦୁହିଁଙ୍କୁ ଠାବ କରିପାରିଲେ ନାହିଁ । ଗୋଟିଏ ଜାଗାରେ ପଥର ଉପରେ "ଟମ୍" ଓ "ବେକି" ଏହି ନାମ ଦୁଇଟି ଲେଖା ଯାଇ-ଥିବାର ଦେଖାଗଲା । ପିଲା ଦିହେଁ ନିଜ ନିଜର ନାମ ମହମବତୀରୁ ବାହାରୁଥିବା ଧୂଆଁ ସାହାଯ୍ୟରେ ଲେଖିଥାନ୍ତି ।

ତିନିଦିନ ତିନିରାତି ଧରି ଅନ୍ୱେଷଣ ଚାଲିଲା । ମାତ୍ର କିଛି ଫଳ ହେଲା ନାହିଁ । ପିଲା ଦୁହିଁଙ୍କର କୌଣସି ସନ୍ଧାନ ମିଳିଲା ନାହିଁ । ଗାଁର ସବୁଲୋକ ଆଶା ଛାଡ଼ିଦେଲେ । ମିସେସ୍ ଥେଚର ଭାଙ୍ଗି ପଡ଼ିଲେ । ଭଗବାନଙ୍କଠାରେ ମିନତି ଜଣାଇବା ଛଡ଼ା ପୋଲି ମାଉସୀଙ୍କର ଅନ୍ୟ ଗତି ନ ଥିଲା ।

# ଗୁମ୍ଫା ଭିତରେ ଟମ୍ ଏବଂ ବେକି

ଅନ୍ୟାନ୍ୟ ପୁଅ-ଝିଅମାନଙ୍କ ସାଙ୍ଗରେ ଟମ୍ ଏବଂ ବେକି ଗୁମ୍ଫା ଭିତରେ ବୁଲିବାରେ ଲାଗିଥାନ୍ତି । ସମସ୍ତେ ମିଶି ଖେଳୁଥାନ୍ତି, ହସି ହସି ଗଡ଼ି ଯାଉଥାନ୍ତି, କିଏ କେତେ କିସମର ଗୀତ ଗାଇବାରେ ଲାଗିଥାନ୍ତି । ଧୀରେ ଧୀରେ ଟମ୍ ଏବଂ ବେକି ଅନ୍ୟମାନଙ୍କୁ ଆଉ-ପଛରେ ପକାଇ ଗୁମ୍ଫାର ବହୁତ ଭିତରକୁ ଚାଲିଗଲେ । ଗୁମ୍ଫା ଭିତରେ ଗ୍ଗୋଟ ଝରଣାଟିଏ ବହି ଯାଉଥାଏ । ବାଲୁର ଶଯ୍ୟା ଉପରେ କାଚ ଧାର ପରି ସ୍ୱଚ୍ଛ-ଶୀତଳ ଜଳ ନେଇ ଗଡ଼ି ଯାଉଥାଏ କାହିଁ କେତେ ଦୂରକୁ । କେଉଁଠାରେ ତାର ଉତ୍ପତ୍ତି ପୁଣି କେଉଁ-ଠାରେ ତାର ସମାପ୍ତି ସେ କଥା ବା କିଏ କହିବ ? ଟମ୍ ଏବଂ ବେକି ଯାଇ ସେଇ ଝରଣାକୂଳରେ ପହଞ୍ଚିଲେ । ସେହି ସ୍ଥାନର ଶାନ୍ତ-ଶୀତଳ ପରିବେଶ ଓ ସ୍ୱଚ୍ଛ ସଲିଳା କୁଳୁକୁଳୁନାଦିନୀ ଝରଣାର ମଧୁର ମୂର୍ଚ୍ଛନା ଏଡ଼ି ସେମାନେ ଅଗ୍ରସର ହୋଇପାରିଲେ ନି । ବିଶ୍ରାମ ନେବା ପାଇଁ ହିଦ୍ଦୈଯାକ ଝରଣାକୂଳରେ ବସିଲେ । ଆଖି ବୁଲାଇ ଚାରିପାଖ ଚାହୁଁଥାନ୍ତି । ସହସା ଏକ ମଜଜିଆ ରାସ୍ତା ଟମ୍‌ର ଆଖିରେ ପଡ଼ିଲା । ବେକିକୁ କହିଲା, "ଚାଲ, ଏଇ ରାସ୍ତାରେ ଯିବା ଏବଂ ନୂଆ ନୂଆ ଜିନିଷ ଆବିଷ୍କାର କରିବା !" ସେମାନେ ଅଗ୍ରସର ହେଲେ ଏବଂ ସଡ଼କ ଭିତରେ ଗୁମ୍ଫାର ବହୁତ ଭିତରକୁ ଚାଲି-ଗଲେ । ମଝିରେ ମଝିରେ ଟମ୍ ଗୁମ୍ଫାର କାନ୍ଥରେ ଦାଗ ଦେଇ ଯାଉଥାଏ । କହୁଥାଏ, "ଫେରିବାବେଳେ ଏଇ ଦାଗଗୁଡ଼ିକ ଆମର ପଥ ପ୍ରଦର୍ଶକ ହେବେ ।" ହିଦ୍ଦୈଯାକ ଧୀରେ ଧୀରେ ଅଗ୍ରସର ହେଉଛନ୍ତି ଏହିପରି ସମୟରେ ହଠାତ୍ କେଉଁଆଡ଼ୁ ଦଳେ ବାଦୁଡ଼ି ଫଡ଼ ଫଡ଼ ଶବ୍ଦ କରି ସେମାନଙ୍କ ଆଡ଼କୁ ଉଡ଼ି ଆସିଲେ । ଗୋଟିଏ

ବାଦୁଡ଼ର ଡେଣା ବାଜିଯିବାରୁ ବେକି ହାତରେ ଥିବା ମହମବତୀଟି ଲିଭିଗଲା । ଟମ୍ ହାତଟେକି ବାଦୁଡ଼ିକୁ ଘଉଡ଼ା ଦେବାର ଚେଷ୍ଟା



କଲା; ଚାରିଆଡ଼ୁ ଅନେକ ବାଦୁଡ଼ ଆସିବାକୁ ଲାଗିଲେ । ପିଲା ଦୁଇଟି ପାରୁପର୍ଯ୍ୟନ୍ତ ଚେଷ୍ଟା କରି ଖୁବ୍ ଜୋରରେ ଦୌଡ଼ିଲେ । କିଛିବାଟ ଯିବାପରେ ଦେଖିଲେ ଯେ ସେମାନଙ୍କ ପଛରେ ଆଉ ବାଦୁଡ଼ ଆସୁ ନାହାନ୍ତି । ସେମାନେ କିଛିଟା ଆଶ୍ୱସ୍ତି ଲାଭ କଲେ । ଆଉ ଦୌଡ଼ିଲେ ନାହିଁ । ଖୁବ୍ ଥକା ଲାଗୁଥାଏ । ନିଶ୍ୱାସ ବଳେଇ ପଡ଼ୁଥାଏ । ବିଶ୍ରାମ ନେବା ପାଇଁ ସେମାନେ ଗୋଟିଏ ଜାଗାରେ ବସିଲେ । ଗଣ୍ଡଗୋଳ ବୋଲି ସେଠାରେ କିଛି ନ ଥାଏ । ନୀରବତା ସାଙ୍ଗକୁ ଅନ୍ଧକାର ବେକି ମନରେ ଖୁବ୍ ଭୟ ଜନ୍ମାଉଥାଏ । କହିଲା, "ଟମ୍, ଆଉ ଆଗେଇବା ନାହିଁ । ଚାଲ ଏଠାରୁ ଫେରିଯିବା । ତୁ କଣ ବାଟ ପାଇବୁ ନାହିଁ ?" "କାହିଁକି ? ବାଟ ଠିକ୍ କରିବାକୁ ମୋର କିଛି ଅସୁବିଧା ହେବ ନାହିଁ । କିନ୍ତୁ ଆମେ ଆଉ ଗୋଟିଏ ନୂଆ ବାଟରେ ଫେରିବା । ଆମେ ଯେବେ ଆସିଥିବା ରାସ୍ତାରେ ଫେରୁ, ତାହାହେଲେ ସେଇ ବାଦୁଡ଼ଗୁଡ଼ାକ ଆମକୁ ପୁଣି

ଅସୁବିଧାରେ ପକାଇବେ ।" ସେମାନେ ଆଗକୁ ଆଗକୁ ମାଡ଼ି ଗ୍ଭଲଥାନ୍ତି । କିଛି ସମୟ ପରେ ସେମାନେ ବାଟବଣା ହେଲେ । ବାଟବଣା ହେବା କଥା ଟମ୍ ଜାଣି ପାରିଲା; କିନ୍ତୁ କିଛି କହିଲା ନାହିଁ । ବେକ କାନ୍ଦିବାରେ ଲାଗିଲା । କାନ୍ଦି କାନ୍ଦି କହିଲା, "ଟମ୍, ଆମେ ଆଉ ବାଟ ପାଇବା ନାହିଁ ।" ତାକୁ ସାହସ ଦେବା ପାଇଁ ଟମ୍ କହିଲା, "ତୁ ଏପରି ଅଧୈର୍ଯ୍ୟ ହେଉଛୁ କାହିଁକି ? ବାଟ ପାଇବାକୁ ମୋତେ କଷ୍ଟ ହେବ ନାହିଁ ।"

ସେମାନେ ପୁଣି ଗ୍ଭଲିବାରେ ଲାଗିଲେ । ତା'ପରେ ସେମାନେ ବସିଲେ । ଗୋଟିଏ ବତିରେ ବାଟ ଦେଖିବାକୁ ଅସୁବିଧା ହେବ ନାହିଁ ଭାବି ଟମ୍ ବେକ ହାତରେ ଥିବା ବତିଟି ଲିଭାଇଦେଲା । ବଳକା ବତି ବୋଲି ଆଉ ମାତ୍ର ଗୋଟିଏ ବତି ସେମାନଙ୍କ ହାତରେ ଥାଏ । ସେ'ଟା ସରିଗଲା ପରେ ସେମାନେ କରିବେ କ'ଣ ! କିଛି ସମୟ ପାଇଁ ବିଶ୍ରାମ ନେଇ ସେମାନେ ପୁଣି ଗ୍ଭଲିବାରେ ଲାଗିଲେ । ସେମାନଙ୍କ ବାଟରେ ଆଉ ଗୋଟିଏ ସ୍ରୋତ ଝରଣା ପଡ଼ିଲା । ସେମାନେ ତାହା କୂଳରେ ବସିଲେ । ଶୋଷରେ ଜିଭ ଅଠା ଅଠା ହୋଇ ଯାଉଥାଏ । ସେମାନେ କିଛି ପାଣି ପିଇଲେ । ଟମ୍ ତା' ପକେଟରେ ଖଣ୍ଡେ ପିଠା ରଖିଥାଏ । ତାହାକୁ ଦୁଇଭାଗ କଲା । ଗୋଟିଏ ଭାଗ ବେକ ହାତକୁ ବଢ଼ାଇଦେଲା ଏବଂ ଅନ୍ୟ ଭାଗଟିରୁ ଅଳ୍ପ ଖାଇ ବାକିତକ ପକେଟରେ ରଖିଦେଲା ବେକ ପାଇଁ । ଧୀରେ ଧୀରେ କହିଲା, "ବେକ, ଏଇଟା ଆମର ଶେଷ ବତି । ଆମେ ଏଇଠାରେ ରହିବା । ଶୋଷ ହେଲେ ଆମକୁ ଏଠାରେ ପାଣି ମିଳିବ ।"

"ଟମ୍, ସେମାନେ କ'ଣ ଆମ ଦୁଇଜଣଙ୍କୁ ଖୋଜିବାକୁ ଆସିବେ ନାହିଁ ?"

"ଆସିବେ ନାହିଁ ବୋଲି କିଏ କହିଲା ? ନିଶ୍ଚୟ ଆସିବେ । ହୁଏତ ବର୍ତ୍ତମାନ ସେମାନେ ଆମକୁ ଖୋଜୁଥିବେ ।" ଏହାପରେ ଟମ୍ ହଠାତ୍ ଚୁପ୍ ରହିଲା । ମିସେସ୍ ଥେଚର୍‌ଙ୍କ କଥା ତା'ର ମନେ ପଡ଼ିଲା । ସେ ଭାବୁଥିବେ ଯେ ବେକି ବର୍ତ୍ତମାନ ମିସେସ୍ ହାର୍‌ପାର୍‌ଙ୍କ ପାଖରେ ଥିବ ! ବେକି ବି' ସେହିପରି ଭାବୁଥାଏ । ଦୁହେଁଯାକ ବସିଥାନ୍ତି ନୀରବ-ନିଶ୍ଚଳ ଭାବରେ । ସେମାନଙ୍କର ଶେଷବତୀଟି ଲିଭିଗଲା ।

ଚାରିପାଖରେ ଅନ୍ଧକାର ଯେପରି ସେମାନଙ୍କ ଆଡ଼କୁ ମାଡ଼ି ଆସିଲା । ଯେଉଁଆଡ଼େ ଚାହିଁଲେ ସେଇ ଅନ୍ଧାର । କ୍ଷୀଣ ଆଲୋକ-ରେଖାଟିଏ ସୁଦ୍ଧା କୌଣସିଆଡ଼େ ଦେଖାଯାଉ ନ ଥାଏ । ଗହ୍ୱର ଭିତରେ ଟିଁ ଟିଁ ଶବ୍ଦ ମନକୁ ଆହୁରି ଦୁର୍ବଳ କରି ଦେଉଥାଏ । ବେକି କାନ୍ଦିବାରେ ଲାଗିଲା । କିନ୍ତୁ ସେଠାରେ ଆଉ କିଏ ଅଛି ଯେ ତା' କାନ୍ଦ ଶୁଣି ଦୌଡ଼ି ଆସିବ ? ତାହାର କ୍ରନ୍ଦନ ଅରଣ୍ୟ-ରୋଦନରେ ପରିଣତ ହେଲା । କାନ୍ଦି କାନ୍ଦି ସେ ଥକିଗଲା । ମୃଦୁ ସମୀରଣର ନରମ ପରଶ ତାହାର କ୍ଳାନ୍ତ କୋମଳ ଅବୟବରେ ସ୍ନିଗ୍ଧ ଚନ୍ଦନର ପ୍ରଲେପ ଲିପି ଦେଲା । ନିଦ୍ରାଦେବୀଙ୍କର ସୁକୋମଳ କୋଳକୁ ଆଉଜିଗଲା ବେକି । ତା' ପଛେ ପଛେ ଟମ୍ ବି ଶୋଇ-ପଡ଼ିଲା । କିଛି ସମୟପରେ ସେମାନଙ୍କର ନିଦ ଭାଙ୍ଗିଲା । ଭୋକରେ ପେଟ ଜଳୁଥାଏ । ଟମ୍ ପାଖରେ ଥିବା ବାକିତକ ପିଠା ଦୁହେଁ ଭାଗ କରି ଖାଇଲେ । ସେତିକରେ ବା କ'ଣ ହେବ ? ଭୋକଜ୍ୱାଳା ମେଣ୍ଟିଲା ନାହିଁ । କ୍ଳାନ୍ତ ଘୁଞ୍ଚିଲା ନାହିଁ । ଦୁହେଁଯାକ ବସିଥାନ୍ତି ବିମର୍ଷ ଭାବରେ ।

ହଠାତ୍ କିଛି ଲୋକଙ୍କର ଚିତ୍କାର ସେମାନଙ୍କର କାନରେ ବାଜିଲା । ଟମ୍ ପାଟି କରି କହିଲା, "ବେକି ! ବେକି ! ସେମାନେ

ଆମକୁ ଦେଖି ପାରୁଲେଣି !" ଏକ ଅବ୍ୟକ୍ତ ଆନନ୍ଦରେ ପିଲା ଦୁଇଟି ପାଗଳ ହୋଇଗଲେ । ସେମାନେ ଖୁବ୍ ବଡ଼ ପାଟିରେ ଚିତ୍କାର କଲେ । ଯେଉଁଆଡ଼େ ପାଟି ଶୁଭୁଥିଲା ସେହିଆଡ଼କୁ ଦୌଡ଼ିଲେ । ମାତ୍ର ଅନ୍ଧାର ହେତୁ ସେମାନେ ଶୀଘ୍ର ଶୀଘ୍ର ଯାଇପାରୁ ନ ଥାନ୍ତି । ଦୁର୍ବଳତା ଯୋଗୁଁ ବଡ଼ ପାଟିରେ ଡାକି ପାରୁ ନ ଥାନ୍ତି । ଆଉ କାହାର ଡାକରା ଶୁଭିଲା ନାହିଁ । ପୂର୍ବର ନୀରବତା ପୁଣି ସେ ଜାଗାକୁ ଫେରି ଆସିଲା ।

ଦୁଃଖିତ ମନରେ ପିଲା ଦୁଇଟି ଫେରି ଆସିଲେ ସେଇ ଝରଣା କୂଳକୁ । ଖୁବ୍ ଶୀଘ୍ର ସେମାନେ ଶୋଇ ପଡ଼ିଲେ । ଉଠିଲାବେଳକୁ ଭୋକରେ ସେମାନଙ୍କର ପେଟ ଆଗଠାରୁ ଆହୁରି ବେଶୀ ଜଳୁଥାଏ । ବେକି ଏତେ ବେଶୀ ଭୋକିଲା ହୋଇଥାଏ ଯେ ସେ ବସିବା ଜାଗାରୁ ଉଠି ଠିଆ ହୋଇପାରୁ ନ ଥାଏ । ଏତେ କ୍ଲାନ୍ତ ହୋଇ ପଡ଼ିଥାଏ ଯେ କାନ୍ଦିବା ପାଇଁ ସୁଦ୍ଧା ତାହାର ଶକ୍ତି ପାଉ ନ ଥାଏ । ମାତ୍ର ଟମ୍ କହିଲା, "ମୁଁ ଯାଉଛି, ପୁଣି ଚେଷ୍ଟା କରିବ ।" ସେ ପକେଟ ଭିତରୁ ଖଣ୍ଡେ ଲମ୍ବା ଦଉଡ଼ି ବାହାର କଲା । ଦଉଡ଼ିର ଗୋଟିଏ ମୁଣ୍ଡ ନେଇ କୌଣସି ଗୋଟିଏ ପଥରରେ ବାନ୍ଧି ଦେଲା । ପରେ ଦଉଡ଼ିଟିକୁ ହାତରେ ଧରି ସେ ଗୋଟିଏ ରାସ୍ତାରେ କିଛିଦୂର ଅଗ୍ରସର ହେଲା । ରାସ୍ତା ମୁଣ୍ଡକୁ ଗୋଟିଏ ବଡ଼ ପଥର ଥିବାର ଦେଖିଲା । ସେହିଠାରେ ରାସ୍ତା ଶେଷ ହୋଇ ଯାଇଥାଏ । ତେଣିକି ରାସ୍ତା ବୋଲି ଆଉ କିଛି ନ ଥାଏ । ଟମ୍ ଫେରି ଆସିଲା । ଭାବିଲା, "ଅନ୍ୟ ଗୋଟିଏ ରାସ୍ତାରେ ଯାଇ ମୋତେ ଦେଖିବାକୁ ପଡ଼ିବ ।" ବିଭିନ୍ନ ରାସ୍ତାରେ ଯାଇ ସେ ଚେଷ୍ଟା କରିବାରେ ଲାଗିଥାଏ । ବାରମ୍ବାର ଅକୃତକାର୍ଯ୍ୟ ହେଲେ ବି ସେ ଚେଷ୍ଟାରୁ ବିରତ ହେଉ

ନ ଥାଏ । ମନେ ମନେ ଭାବୁଥାଏ, "ଯାହାହେଲେ ହେଉଥାଉ ପଛକେ ମୁଁ କେବେହେଲେ ମୋ ଚେଷ୍ଟାରୁ ଓହରିବ ନାହିଁ ।"

ପରବର୍ତ୍ତୀ ରାସ୍ତା ଧରି ସେ ମାଡ଼ି ଚାଲିଥାଏ ଆଗକୁ । ରାସ୍ତା ମୁଣ୍ଡକୁ ଏକ ଆଶ୍ଚର୍ଯ୍ୟଜନକ ଘଟଣା ତା'ର ଦୃଷ୍ଟିଗୋଚର ହେଲା । ସହସା ଏକ ଆଲୋକରେଖା ତା' ଆଖିରେ ପଡ଼ିଲା । ଜଣେ କେହି ଲୋକର ହାତଟାଏ ଦେଖିଲା ଟମ୍ । ସେ ଗୋଟିଏ ବତି ଧରିଥାଏ । ଲୋକଟାକୁ ପୂର୍ଣ୍ଣଭାବରେ ଦେଖିହେଲେ ବି ଚିହ୍ନି ହେଉ ନ ଥାଏ । ଭୟରେ ଟମ୍‌ର ଛାତି ଧଡ଼ପଡ଼ ହେଲା । ତା ସାଙ୍ଗକୁ ଏକ କ୍ଷୀଣ ଆଶାର ଆଲୋକରେ ଉଜ୍ଜ୍ୱଳ ଉଠିଲା ତାହାର ମୁହଁ । ସାହାଯ୍ୟ କରିବାକୁ କେହି ଜଣେ ଆସିଲା ପରା ! କିନ୍ତୁ ବତି ଆଲୁଅରେ ଟମ୍ ଲୋକଟିକୁ ଚିହ୍ନିଲା । "ଆରେ ଇୟେ ତ ରେଡ଼୍ ଯୁ' ! ଇୟେ ପୁଣି ଏଠାକୁ ଆସିଲା କାହିଁକି ?" ମନେ ମନେ ଭାବିଲା, "ଇୟେ ନିଶ୍ଚୟ ମୋତେ ହତ୍ୟା କରିବା ମତଲବ ଧରି ଆସିଛି ।" ଭୟରେ ସେ କାଠ ପାଲଟିଗଲା । ଟିକେହେଲେ ହଲଚଲ ହୋଇପାରିଲା ନାହିଁ । ମାତ୍ର ସେଠାରେ ଅଟକି ରହିବା ପାଇଁ ରେଡ଼୍ ଯୁ'ର ଟିକେହେଲେ ସମୟ ନ ଥିଲା । ସେ ଦ୍ରୁତଗତିରେ ଚାଲିଗଲା ତା ନିଜ କାମରେ । ଅଳ୍ପ ସମୟ ଅପେକ୍ଷା କଲା ପରେ ଟମ୍ ବେକି ପାଖକୁ ଫେରିଗଲା । ତା ଦେହଯାକ ଥରୁଥାଏ ଶୁଖିଲା ପତ୍ର ପରି । କିନ୍ତୁ ରେଡ଼୍ ଯୁ' ବିଷୟରେ ସେ ବେକିକୁ କିଛି କହିଲା ନାହିଁ ।

ବେକି ଅଧିକରୁ ଅଧିକ ଦୁର୍ବଳ ହୋଇ ପଡୁଥାଏ । ଟମ୍ ମଧ୍ୟ ଗୋଟିକ ପରେ ଆଉ ଗୋଟିଏ ରାସ୍ତାରେ ଯାଇ ବାହାରିଯିବାର ବାଟ ଖୋଜୁଥାଏ । ମାତ୍ର ବାଟ ପାଇବାର ଆଶା ଧୀରେ ଧୀରେ ତା ମନରୁ ଲିଭି ଆସୁଥାଏ । ତଥାପି ତା ଚେଷ୍ଟାରେ ସେ ଲାଗିଥାଏ ।

# ପ୍ରାଣରକ୍ଷା

ସମସ୍ତ ଗାଁକୁ ବିଷାଦର ଛାୟା ଢାଙ୍କି ରଖିଥାଏ । ଚୁହୁଁ ଚୁହୁଁ ଆଶା-ନିରାଶା ଭିତରେ ତିନୋଟି ଦିନ ଅତିକ୍ରାନ୍ତ ହେଲା । ପକ୍କା ତିନିଦିନ ତିନିରାତିର ଅନ୍ୱେଷଣ ଅନର୍ଥକ ହେଲା । କାହାରି ମନରେ କଣିକାଏ ସୁଦ୍ଧା ଆଶା ରହିଲା ନାହିଁ । ମିସେସ୍ ଥେଚର୍ ନିଜକୁ ମୃତବତ୍ ମନେ କଲେ । ମନରେ ଅତି କ୍ଷୀଣ ଆଶା ଧରି ପୋଲି ମାଉସୀ ଚାହିଁଥାନ୍ତି ଟମ୍‌ର ଫେରିବା ବାଟକୁ । ମାତ୍ର ନିଶାର୍ଦ୍ଧରେ ଏକ ଅପୂର୍ବ ପରିବର୍ତ୍ତନ ଦେଖାଦେଲା ! ଆନନ୍ଦର ସୂଚନା ଜଣାଇ ଗୀର୍ଜା ଘଣ୍ଟି ବାଜି ଉଠିଲା । ଗାଁର ସବୁଲୋକ ରାସ୍ତା ଉପରେ ଜମିଗଲେ । "ଟମ୍ ଏବଂ ବେକି ସଂପୂର୍ଣ୍ଣ ନିରାପଦ ! ସେମାନଙ୍କୁ ଠାବ କରାଯାଇ ପାରିଛି ! ସେମାନେ ଘରକୁ ଫେରୁଛନ୍ତି !"

ପିଲା ଦୁଇଜଣ ଗୋଟିଏ ଖୋଲା ଘୋଡ଼ାଗାଡ଼ିରେ ବସି ଘରକୁ ଫେରୁଥାନ୍ତି । ସାରା ଗାଁରେ ଆନନ୍ଦର ରୋଳ ଉଠୁଥାଏ । ଏଭଳି ଉଲ୍ଲସିତ ଏବଂ ଉତ୍ତେଜିତ ମନ ଧରି କେହି କେବେ ଶୋଇପାରିବ ବୋଲି ଭାବିପାରୁ ନ ଥାଏ । ଜଜ୍ ଥେଚର୍‌ଙ୍କ ଘରେ ଯାଇ ଗାଡ଼ି ଲାଗିଲା । ଗାଁର ସବୁଲୋକ ସେଠାରେ ଅଜାଡ଼ି ହୋଇପଡ଼ିଲେ । ପୋଲି ମାଉସୀ ମଧ୍ୟ ସେଠାରେ ଥା'ନ୍ତି । ଆନନ୍ଦରେ ତାଙ୍କ ପେଟ ପୂରି ଉଠୁଥାଏ । ଅବିରତ ଭାବରେ ତାଙ୍କ ମୁହଁରୁ ବାହାରୁଥାଏ, "ଭଗବାନ, ତୁମକୁ ଅଶେଷ ଧନ୍ୟବାଦ ! ଭଗବାନ, ତୁମେ ବାସ୍ତବିକ୍ ମଙ୍ଗଳମୟ !" ମିସେସ୍ ଥେଚର୍‌ଙ୍କ ଧମନୀରେ ନୂତନ ଜୀବନର ଏକ ଉତ୍ତପ୍ତ ପ୍ରବାହ ଛୁଟିଲା । ବାଟଭୁଲା ହଇରାଣିଆ ଜୀବନର କଥାସବୁ ବର୍ଣ୍ଣନା କରି ଚାଲିଥାଏ ଟମ୍ । ସମସ୍ତେ ଉତ୍କଣ୍ଠ ହୋଇ ତାହାର ପ୍ରତ୍ୟେକ କଥା ଶୁଣିବାରେ ଲାଗିଥାନ୍ତି । ନିର୍ନିମେଷ

ଦୃଷ୍ଟିରେ ସମସ୍ତେ ଗୃହିଁଥାନ୍ତି ତାହାରିଆଡ଼େ । ସତେ ଯେପରି ସେ ସମସ୍ତଙ୍କ ଆଖିରେ ଗୋଟିଏ କେତେବଡ଼ ବୀର !

କଥାର ଖିଅ ଧରି ସେ କହିଲା, "ସେତେବେଳେ ଆମ ଦୁହିଁଙ୍କୁ ଖୁବ୍ ଭୋକ । ପେଟ ଜଳୁଥାଏ । ବିଚାରି ବେକିର ଅବସ୍ଥା କଥା ନ କହିବା ଭଲ । ତା'ର କି କ୍ଳାନ୍ତି ! ଖାଲି ଝାଉଁଳି ପଡୁଥାଏ । ଆଖି ଖୋଲି ଚୃହିଁପାରୁ ନ ଥାଏ । ତା'ର ଦୁଃଖ ଦେଖି ବସି ପାରିଲିନି । ଖୁବ୍ ଭୋକ ଲାଗୁଥାଏ । ତଥାପି ଦଉଡ଼ିଟି ହାତରେ ଧରି ଆଉ ଗୋଟିଏ ରାସ୍ତାରେ ଅଗ୍ରସର ହେଲି । ସେଇ ରାସ୍ତା ମୁଣ୍ଡକୁ ସୂର୍ଯ୍ୟାଲୋକ ପଡ଼ିଥିବାର ଦେଖି ମୁଁ ଏକ ଅଜଣା ଆନନ୍ଦରେ ଆତ୍ମହରା ହେଲି । ଆଖିକି ବିଶ୍ବାସ କରି ପାରିଲିନି । ସତ କି ମିଛ ଜାଣିବା ପାଇଁ ଦୌଡ଼ିଲି ସେଇ ଜାଗାକୁ । ରାସ୍ତାର ମୁଣ୍ଡ ଗୋଟିଏ ବଡ଼ ପଥର ଦ୍ବାରା ଅବରୁଦ୍ଧ ହୋଇଥାଏ । ମାତ୍ର ସେଇ ପଥର



ଦେହରେ ଗୋଟିଏ ବଡ଼ ଗାତ ଥାଏ ଏବଂ ସେଇ ଗାତ ଭିତରେ ଭିତରେ ସୂର୍ଯ୍ୟକିରଣ ପ୍ରବେଶ କରି ରାସ୍ତାର ଶେଷଭାଗକୁ ଆଲୋକିତ କରୁଥାଏ । ଗାତ ଭିତରେ ମୁଣ୍ଡ ପୂରାଇ ଦେଖିଲି ପାହାଡ଼ ତଳେ ନଈଟିଏ ଅଙ୍କାବଙ୍କା ହୋଇ ବହିଯାଉଛି । ତାହାର କୁନି କୁନି ଢେଉମାଳା ସଙ୍ଗେ ସୂର୍ଯ୍ୟକିରଣର ଖେଳ ଦେଖିବାକୁ ଖୁବ୍ ଖୁସି ଲାଗୁଥାଏ । ଓଃ, ମନରେ ମୋର ସେ କି ଆନନ୍ଦ ! ସେ ଉଲ୍ଲାସର ପଟାନ୍ତର ନାହିଁ । ଏକୁଟିଆ ସେ ଆନନ୍ଦ ଉପଭୋଗ କରିବାକୁ ଇଚ୍ଛା ହେଲାନି । ଦୌଡ଼ି ଦୌଡ଼ି ଫେରି ଆସିଲି ବେକି ପାଖକୁ । ତାକୁ ଧରି ପୁଣି ସେଇ ଗାତ ପାଖକୁ ଗଲି । ଗାତ ଭିତର ଦେଇ ଦିହେଁଯାକ ଉପରକୁ ଉଠିଲୁ । ବାହାରକୁ ଆସିଲୁ । ପୂର୍ବର ସେଇ ପୁରୁଣା ଗଛ-ଲଟା, ନଈ-ନାଳ ନୂଆ ରୂପ ଧରି ଆମ ଆଖିରେ ଭେଲିକି ସୃଷ୍ଟି କଲେ । ଆମେ ସେଠାରେ ବସିଥାଉ । କିଛି ସମୟ ପରେ ଗୋଟିଏ ଡଙ୍ଗା ଆସୁଥିବାର ଦେଖିଲୁ । ଡଙ୍ଗା ଭିତରେ ଦୁଇଜଣ ଲୋକ ବସିଥାନ୍ତି । ହାତ ହଲାଇ ଆମେ ସେମାନଙ୍କୁ ଡାକିଲୁ । ଲୋକ ଦୁଇଜଣ ଆମ ପାଖକୁ ଆସିଲେ । କିଛି ଖାଦ୍ୟ ଆଣି ଆମକୁ ଖାଇବାକୁ ଦେଲେ । ତା ପରେ ସେମାନେ ଆମ୍ଭ-ମାନଙ୍କୁ ଆଣି ଏଠାରେ ପହଞ୍ଚାଇଲେ ।” ଏହିପରି ଭାବରେ ଟମ୍ ତାହାର କଥା ଶେଷ କଲା ।

ଏହାପରେ ଟମ୍ ହାକ୍‌କୁ ଦେଖିବାକୁ ଗଲା । ହାକ୍ ସେ ପର୍ଯ୍ୟନ୍ତ ରୋଗ ଶଯ୍ୟାରୁ ଉଠି ନ ଥାଏ । ସେ ବୃଦ୍ଧ ମି. ଜୋନ୍‌ସଙ୍କ ପାଖରେ ରହୁଥାଏ । ବିଧବା ଡୋଗଲସ୍ ତାହାର ଯତ୍ନ ନେଉଥାନ୍ତି । ତାଙ୍କର ଆଦର-ଯତ୍ନ ଦେଖିଲେ ଜଣାପଡ଼ୁଥାଏ ସତେ ଯେପରି ହାକ୍ ତାଙ୍କର ଗୋଟିଏ ଅତି ଅଲିଅଳି ପୁଅ ! ବିଚ୍ଛେଦ ପରେ ମିଳନ ମଧୁମୟ ହୁଏ । ବହୁଦିନ ପରେ ବନ୍ଧୁ ଦିହେଁ ପରସ୍ପରକୁ ପାଇ

ଆନନ୍ଦରେ ଆତ୍ମହରା ହେଲେ । ଦୁହିଁଙ୍କର କଥୋପକଥନରେ ଅନେକ ସମୟ ଅତିବାହିତ ହେଲା ।

ହାକ୍ କହିଲା, "ଟମ୍, ଗୁମ୍ଫା ଭିତରେ ରେଡ୍ ସୁ'ର ସାଙ୍ଗଙ୍କୁ ମରିଯାଇଥିବା କଥା ଶୁଣିଛୁ କି ? ଲୋକମାନେ କୁଆଡ଼େ ନଈରୁ ତାହାର ଶବ ଉଦ୍ଧାର କରିଛନ୍ତି ।"

"କ'ଣ ବୁଡ଼ିଗଲା ?"

"ନା, ଶୁଣାଯାଏ ଯେ ରେଡ୍ ସୁ' ତାକୁ ହତ୍ୟା କରି ନଈକୁ ଫିଙ୍ଗି ଦେଇଥିଲା ।"

"ରେଡ୍ ସୁ !"

ଯେ ପର୍ଯ୍ୟନ୍ତ ସେଇ ନାମ ଶୁଣିଲେ ପିଲାମାନଙ୍କର ଦେହ ଥରୁଥାଏ । ସେ ନ ମରିବା ପର୍ଯ୍ୟନ୍ତ ପିଲାମାନଙ୍କ ମନରୁ ଭୟ ଘୁଞ୍ଚିବା ପରି ଜଣାଯାଉ ନ ଥାଏ । ଏହାର ଅଳ୍ପଦିନ ପରେ ରେଡ୍ ସୁ'ର ପ୍ରାଣଗଲା । ସେ କି ଭୟାନକ ମୃତ୍ୟୁ ! ତାହା ଏହିପରି ଭାବରେ ଘଟିଲା !

ଦିନେ ଜଜ୍ ଥେଚର୍ଙ୍କ ସଙ୍ଗେ ଟମ୍‌ର ଦେଖାହେଲା । ପୂର୍ବ ଘଟଣା ପରେ ଟମ୍ ଜଜ୍‌ଙ୍କର ଖୁବ୍ ପ୍ରିୟପାତ୍ର ହୋଇଥାଏ । ଶ୍ରଦ୍ଧାରେ ସେ ଟମ୍‌କୁ କହିଲେ, "ଆଉ କେହି କେବେହେଲେ ଗୁମ୍ଫା ଭିତରେ ହଜିଯିବ ନାହିଁ । ମୁଁ ଗୋଟିଏ ଲୁହା କବାଟ ବସାଇ ଗୁମ୍ଫାକୁ ପଶିବା ରାସ୍ତା ବନ୍ଦ କରି ଦେଇଛି ।"

ଏତିକି କଥା ଶୁଣିବା ପରେ ଟମ୍‌ର ମୁହଁ ଶେଥା ପଡ଼ିଗଲା । ପାଟିକରି କହିଲା, "ସାର୍, ଆପଣ ଗୁମ୍ଫାର ବାଟ ବନ୍ଦ କରି-ଦେଲେ ! କିନ୍ତୁ ରେଡ୍ ସୁ' ଯେ ଭିତରେ ରହିଗଲା !"

"ରେଡ୍ ସୁ' !"

ଆଉ ବେଶୀକିଛି ନ କହି ସେ ନଜର ଲୋକମାନଙ୍କୁ ଧରି ଗୁମ୍ଫା ପାଖକୁ ଗଲେ । ଗୁମ୍ଫାର ପ୍ରବେଶ ଦ୍ୱାର ଖୋଲିଦେଲେ ଜଜ୍ । ଦ୍ୱାର ମୁହଁରେ ପଡ଼ିଥାଏ ରେଡ୍ ସ୍କୁ'ର ନିର୍ଜୀବ ଶରୀର ! ଛୁରୀଟାଏ ପଡ଼ିଥାଏ ତା' ମୃତ ଦେହର ଅନତିଦୂରରେ । ସେହି ଛୁରୀରେ ଲୁହା କବାଟକୁ ଫୁଟାଇବା ପାଇଁ ସେ ବହୁତ ଚେଷ୍ଟା କରିଛି । ମାତ୍ର ପାରି ନାହିଁ । କ୍ଷୁଧାର ଉତ୍କଟ ଯନ୍ତ୍ରଣା ତାହାର ପ୍ରାଣବାୟୁ କାଢ଼ି ନେଇଛି । ଗୁମ୍ଫା ବାହାରେ ଥିବା କୌଣସି ଏକ ସ୍ଥାନରେ ତାକୁ କବର ଦିଆଗଲା ।

## ରେଡ୍ ସ୍କୁ'ର ଗୁପ୍ତଧନ

ରେଡ୍ ସ୍କୁ'ର ମୃତ୍ୟୁରେ ଟମ୍ ଏବଂ ହାକ୍ ଦୁଃଖିତ ହେଲେନାହିଁ । ଜୀଇଥିବା ବେଳେ ତା ଡରରେ ସେମାନେ ଅସ୍ଥିର ହେଉଥିଲେ ସବୁବେଳେ । ଏବେ ସେହି ଭୟ ଆଉ ନାହିଁ । ସେ ଅସ୍ଥିରତା ଯାଇଛି ସବୁଦିନ ଲାଗି । ବର୍ତ୍ତମାନ ସେମାନେ ଠିକେହେଲେ ନ ଡରି ଭାବିବାରେ ଲାଗିଲେ ରେଡ୍ ସ୍କୁ'ର ଗୁପ୍ତଧନ କଥା । ତାହାର ସେହି ଅସରପି ବାକ୍ସର ଛବି ସେମାନଙ୍କ ଆଖି ଆଗରେ ନାଚିଲା । ତାହା ଲାଭ କରିବାର ଇଚ୍ଛା ଏବଂ ବ୍ୟଗ୍ରତା ସେମାନଙ୍କୁ ଉଦ୍‌ଭ୍ରାନ୍ତ କଲା । ହାକ୍ କହିଲା, "ଏହା ଆଉ ପାନ୍ଥଶାଳାର ସେହି କୋଠରୀ ଭିତରେ ନାହିଁ । ମୁଁ ନିଜେ ଯାଇ ସେହି ଜାଗା ଦେଖି ଆସିଛି ।"

ଟମ୍ କହିଲା, "ସେହି ବାକ୍ସ ଗୁମ୍ଫା ଭିତରେ ଅଛି । ବର୍ତ୍ତମାନ ମୁଁ ତାହା ଆବିଷ୍କାର କରିବାକୁ ଯିବି । ତୋର କ'ଣ ମୋ ସହିତ ଯିବାକୁ ଇଚ୍ଛା ହେଉଛି, ହାକ୍ ?"

"ମୋର ଇଚ୍ଛା କଥା ପୁଣି ପଚାରୁଛୁ କ'ଣ ? ତୋ ସହିତ ନ ଗଲେ ମୁଁ କେବେ ସ୍ଥିର ହୋଇ ରହିପାରିବ ନାହିଁ । ତା ଛଡ଼ା ମୁଁ ତ ଆଜି ଆଗପରି ଅସୁସ୍ଥ ନୁହେଁ !"

ଟମ୍ କହିଲା, "ଆମକୁ ଆଜି ଉପରଓଳି ସେଠାକୁ ଯିବାକୁ ହେବ । ସାଙ୍ଗରେ କୋଡ଼ି, ଦଉଡ଼ି, କଛି ଥଳି, ମହମବତୀ ଏବଂ ଦିଆସିଲି ନେବାକୁ ହେବ । ତା ଛଡ଼ା ଖାଇବାଲାଗି ଯଥେଷ୍ଟ ଖାଦ୍ୟ ନେବାକୁ ହେବ ।"

ସେଦିନ ଉପରଓଳି ପିଲାଦିହେଁ ଗୋଟିଏ ସ୍ଲେଟ ଡଙ୍ଗାରେ ବସି ନଈ ତଳକୁ ତଳକୁ ଗଲେ । ଟମ୍ ପାହାଡ଼ ଉପରେ ଥିବା ଗାତଟା ହାକ୍‌କୁ ଦେଖାଇଦେଲା । ସେଇ ଗାତ ବାଟେ ସେ ବେକିକୁ ଧରି ଗୁମ୍ଫାରୁ ବାହାରି ଆସି ପାରିଥିଲା । ଭିତରର ଗୋଲକଧନ୍ଦାରୁ ରକ୍ଷା ପାଇବାରେ ସେମାନଙ୍କୁ ସାହାଯ୍ୟ କରିଥିଲା ଏହି ଗାତ । ଟମ୍ ଏବଂ ହାକ୍ ପାହାଡ଼ ଉପରକୁ ଉଠିଲେ । ସେଇ ଗାତ ବାଟେ ଗୁମ୍ଫା ଭିତରକୁ ଚଲେ । ସାଙ୍ଗରେ ଆଣିଥିବା ବତୀଗୁଡ଼ିକୁ ଜାଳିଲେ ଏବଂ ଗୋଟିଏ ସଙ୍କୀର୍ଣ୍ଣ ରାସ୍ତାରେ ଅଗ୍ରସର ହେଲେ । ଆଗରେ ଚାଲିଥାଏ ଟମ୍ । ହଠାତ୍ ଗୋଟିଏ ଜାଗାରେ ସେ ଠିଆ ହୋଇଗଲା । ତା ହାତରେ ଥିବା ବତୀଟି ଟେକି ହାକ୍‌ର ଦୃଷ୍ଟି ଆକର୍ଷଣ କଲା । କହିଲା, "ହାକ୍, ଏ ଆଡ଼କୁ ଚାହିଁ ଦେଖ୍ ! ଏଠାରେ କ୍ରୁଶ୍ ଚିହ୍ନ ଅଛି । ରେଡ୍ ଯୁ' କହିଥିଲା, 'କ୍ରୁଶ ଚିହ୍ନ ତଳେ ରହିବ ଦୁଇ ନମ୍ବର । ହାକ୍, ଏଠାରେ ଯେତେବେଳେ କ୍ରୁଶ ଚିହ୍ନ ରହିଛି, ଗୁପ୍ତଧନ ନିଶ୍ଚୟ ଏଇଠାରେ ଥିବ । ମୋତେ ଲାଗୁଛି, ଏଇଟା ହିଁ ଠିକ୍ ଜାଗା !"

ହାକ୍ କହିଲା, "ଟମ୍, ଏଠାରେ ରହିବାଲାଗି ମୋତେ ଆଦୌ ଭଲ ଲାଗୁ ନାହିଁ । ଏଠାରେ ରହିଲେ ରେଡ୍ ଯୁ'ର ଭୂତ ଆସି

ହୁଏତ ଆମର ଅନିଷ୍ଟ କରିପାରେ । ଶୁଣ, ଏଠାରୁ ଶୀଘ୍ର ପଳାଇବା ।”

“ମୋ ଦେଇ ସେ କଥା ହୋଇପାରିବ ନାହିଁ, ହାକ୍ । ସେଇ ଅସରପି ବାକ୍ସଟା ହାତକୁ ନ ଆସିବା ପର୍ଯ୍ୟନ୍ତ ମୁଁ କେବେହେଲେ ଏ ସ୍ଥାନ ଛାଡ଼ି ଯିବି ନାହିଁ । ଭୂତ ପ୍ରେତ କଥା ଭାବ ନାହିଁ । ଆ, ମୁଁ ପ୍ରାୟ ନିଶ୍ଚିତ ଯେ ଗୁପ୍ତଧନ ଏଇଠାରେ ଅଛି ।”

ଟମ୍ ଆଗେ ଆଗେ ଚାଲିଥାଏ । ସେମାନେ ସେହି ରାସ୍ତାରେ ଆଉ କିଛିଦୂର ଅଗ୍ରସର ହେଲେ । ଶେଷରେ ସେମାନେ ଯାଇ ଗୋଟିଏ ବଡ଼ ପଥରଖଣ୍ଡ ପାଖରେ ପହଞ୍ଚିଲେ । ଟମ୍ ଛିଡ଼ା ହେଲା । ସେଠାରେ କେତେଗୁଡ଼ିଏ ପାଦଚିହ୍ନ ପଡ଼ିଥାଏ । କେତେଗୁଡ଼ିଏ ପୋଡ଼ା ଦିଆସିଲି କାଠି ଇତସ୍ତତଃ ପଡ଼ିଥାଏ । ଟମ୍ ସେଗୁଡ଼ିକ ଆଡ଼କୁ ହାକ୍‌ର ଦୃଷ୍ଟି ଆକର୍ଷଣ କରି କହିଲା, “ଜଣେ କେହି ନିଶ୍ଚୟ ଏଠାକୁ ଆସିଛି । ଦିଆସିଲି ମାରି ବତି ଜାଳିଛି । ମୋର ପୂରା ବିଶ୍ୱାସ ସେଇ ଅସରପି ବାକ୍ସଟା ଏଇଠାରେ ଅଛି । ମୁଁ ଏଇ ପଥର ତଳକୁ ତାଡ଼ି ଦେଖିବି ।”

ପିଲାଦିହେଁ ମାଟି ତାଡ଼ିବା ଆରମ୍ଭ କରିଦେଲେ । ହଠାତ୍ କ’ଣ ଗୋଟିଏ କଠିନ ଜିନିଷ କୋଡ଼ିରେ ବାଜିଲା । ଟମ୍ କହିଲା, “ଏଇଟା ଗୋଟିଏ ବାକ୍ସ ! ଖୁବ୍ ସମ୍ଭବ ସେଇ ଅସରପି ବାକ୍ସ !” ସେମାନେ ଦିହେଁ ମିଶି ବାକ୍ସଟିକୁ ଟାଣି ଟାଣି ଉପରକୁ ଆଣିଲେ । ତାହା ଘର୍ଷି ମେଲି କଲେ । ବାକ୍ସଟି ଖାଲି ସ୍ୱର୍ଣ୍ଣ-ମୁଦ୍ରାରେ ପରିପୂର୍ଣ୍ଣ ଥାଏ । ଆନନ୍ଦରେ ଆତ୍ମହରା ହୋଇ ପିଲାଦିହେଁ ପାଟି କରି କହି ଉଠିଲେ, “ହେ ଭଗବାନ ! ତୁମେ କେତେ ଦୟାଳୁ !” ଦୁହେଁ ଦୁହିଁଙ୍କୁ ଚାହିଁଥାନ୍ତି ! ପୁଣି ଆଖି ଫେରାଇ ଦେଖୁଥାନ୍ତି ଅସରପି ବାକ୍ସକୁ । ମନରେ କି ଆନନ୍ଦ ଏବଂ

ଉତ୍ତେଜନା ! ସେମାନଙ୍କର ହସ, ଗୀତ ଏବଂ ନାଚ ଦେଖିଲେ ପିଲା ଦୁଇଟିକୁ ଯେ କେହି ଲୋକ ପାଗଳ ବୋଲି କହିବ ।



ଏତେ ଓଜନଆ ବାକ୍ସଟିକୁ ବୋହିନେବା ପିଲାଦୁହିଁଙ୍କ ପକ୍ଷରେ ଅସମ୍ଭବ ହେଲା । ସେମାନେ ସାଙ୍ଗରେ ଆଣିଥିବା ଥଳିଗୁଡ଼ିକରେ ସ୍ୱର୍ଣ୍ଣମୁଦ୍ରା ପୂର୍ଣ୍ଣ କଲେ । ଯତ୍ନ ସହକାରେ ସେଗୁଡ଼ିକୁ ନେଇ ଡଙ୍ଗାରେ ରଖିଲେ ।

ଡଙ୍ଗା ଫେରିଲେ ଗାଁକୁ । ମନରେ ଗଡ଼ ଜୟ କରିବାର ଉଲ୍ଲାସ । ମି. ଜୋନ୍‌ସଙ୍କ ଘରକୁ ଯାଇ ସେମାନେ ତାଙ୍କଠାରୁ ଗୋଟିଏ ଗାଡ଼ି ମାଗିଲେ । ଥଳିଗୁଡ଼ିକ ନେଇ ଗାଡ଼ିରେ ରଖିଲେ । ସେଗୁଡ଼ିକ ଭିତରେ କଣ ଅଛି ସେ କଥା ମି. ଜୋନ୍‌ସଙ୍କୁ କହିଲେ ନାହିଁ ।

ମି. ଜୋନ୍‌ସ କହିଲେ, "ପିଲାମାନେ, ତେଣେ ମିସେସ୍ ଡୋଗଲସ୍ ତୁମ ଦୁହିଁଙ୍କୁ ଚାହିଁ ବସିଛନ୍ତି । ସେ ଆଜି ଗୋଟିଏ

ଭୋଜିର ଆୟୋଜନ କରିଛନ୍ତି । ତୁମ୍ଭେମାନେ ନ ଗଲେ ତାଙ୍କ ମନରେ ଖୁବ୍ ଦୁଃଖ ହେବ । ମୋତେ ମଧ୍ୟ ସେହି ଭୋଜିରେ ଯୋଗଦେବାକୁ ସେ ନିମନ୍ତ୍ରଣ କରିଛନ୍ତି । ଅପେକ୍ଷା କର, ସମସ୍ତେ ସାଙ୍ଗ ହୋଇ ଯିବା । ମି. ଜୋନ୍ସ, ଟମ୍ ଏବଂ ହାକ୍ ସମସ୍ତେ ଗାଡ଼ିରେ ବସି ବିଧବା ଡୋଗଲସ୍‌ଙ୍କ ଘରେ ପହଞ୍ଚିଲେ ।

## ବିଧବା ଡୋଗଲସ୍ ଗୋଟିଏ ଭୋଜି ଦେଲେ

ପିଲମାନେ ଗାଡ଼ିରୁ ଓହ୍ଲାଇ ଘର ଭିତରକୁ ଗଲେ । ଅପରିପୂର୍ଣ୍ଣ ଥଳିଗୁଡ଼ିକ ଗାଡ଼ିରେ ଥାଏ । ଗାଁର ମୁଖିଆ ମୁଖିଆ ଲୋକମାନେ ଘର ଭିତରେ ଥାନ୍ତି । ପିଲ ଦୁହିଁଙ୍କୁ ଦେଖି ବିଧବା ଡୋଗଲସ୍ କୋଟିନିଧି ପାଇଲା ପରି ମନେ କଲେ । ସେ ଦୌଡ଼ିଯାଇ ଚୁମ୍ବନ ପରେ ଚୁମ୍ବନ ଅଜାଡ଼ି ଦେଲେ ସେମାନଙ୍କ ଉପରେ । ସେମାନଙ୍କୁ ମଇଳା ହୋଇଥିବାର ଦେଖି ସେ କହିଲେ, "ତୁମ୍ଭେ-ମାନେ ଉପର ମହଲକୁ ଯାଇ ଗାଧୁଆଘରେ ସଫାସୁତୁରା ହୋଇ ଆସ । ତୁମ୍ଭେମାନେ କାମ ସାରି ଆସିଲେ ଆଜିର ଉତ୍ସବ ଆରମ୍ଭ ହେବ ।"

ଉପର ମହଲକୁ ଯିବାପରେ ହାକ୍ କହିଲା, "ଟମ୍, ମୋତେ ସେଇ ତଳମହଲକୁ ଯାଇ ସେଠାରେ ଥିବା ଲୋକମାନଙ୍କ ଭିତରେ ରହିବାକୁ ଇଚ୍ଛା ହେଉ ନାହିଁ । ଚାଲ, ଏଇ ଝରକାବାଟେ ତଳକୁ ଯାଇ ଏଠାରୁ ପଳାଇଯିବା ।"

ଠିକ୍ ସେହି ସମୟରେ ସିଦ୍ ଆସି ସେଠାରେ ପହଞ୍ଚିଲା । ସେମାନଙ୍କର ମଇଳା ପୋଷାକବୁକ-ପରିଚ୍ଛଦ ଦେଖି ସେ ପଚାରିଲା,

"ତୁମ୍ଭେମାନେ କେଉଁଆଡ଼େ ଯାଇଥିଲ ? ଉପରଓଳ ସାରା ପୋଲ ମାଉସୀ ତୁମକୁ ଖୋଜିବାରେ ଲଗିଛନ୍ତି ।" ଟମ୍ କିଛି କହିଲା ନାହିଁ । ସେ ତା'ର ଗୋଡ଼ ହାତ ଧୋଇବାରେ ଲଗିଥାଏ । ତା ପରେ ପଚାରିଲା, "ବିଧବା ଡୋଗଲସ୍‌ଙ୍କର ଏଭଳି ଗୋଟିଏ ଭୋଜି ଆୟୋଜନ କରିବାର କାରଣ କ'ଣ ?"

ମି. ଜୋନ୍‌ସଙ୍କ ପାଇଁ ଏହିସବୁ ଆୟୋଜନ । ସେଦିନ ରାତିରେ ସେ ରେଡ୍ ଯୁ' କବଳରୁ ତାଙ୍କୁ ରକ୍ଷା କରିଥିଲେ । ସେହି ଘଟଣା ପରେ ପରେ ଗାଁର ସବୁ ଲୋକ ତାଙ୍କୁ ଏକ ବିସ୍ମୟ ବୋଲି ମନେ କଲେ । ଏବେ ଲୋକମାନଙ୍କ କାନରେ ଦ୍ଭୁତ କଥାଯାଇ ପହଞ୍ଚିଛି ଏବଂ ସେମାନଙ୍କ ବିସ୍ମୟ ଭାଙ୍ଗିଛି ।"

ଟମ୍ ପଚାରିଲା, "ଦ୍ଭୁତ କଥାଟା କ'ଣ ?"

"ଦ୍ଭୁତ କଥା ହେଉଛି, ସେଦିନ ରାତିରେ ହାକ୍ ରେଡ୍ ଯୁ' ପଛେ ପଛେ ବିଧବା ଡୋଗଲସ୍‌ଙ୍କ ଘର ପର୍ଯ୍ୟନ୍ତ ଆସିଥିଲା ଏବଂ ସେଠାରେ ସେତେବେଳେ ରେଡ୍ ଯୁ'ର ଅସଦିଚ୍ଛା କଥା ଜାଣିଲା ସାହାଯ୍ୟ ପାଇବା ଆଶାରେ ସେ ଆଖିବୁଜି ଦୌଡ଼ିଲା ମି. ଜୋନ୍‌ସଙ୍କ ଘରକୁ ।"

ହାକ୍ ପଚାରିଲା, "ଗାଁ ଲୋକମାନଙ୍କ ଆଗରେ ଏକଥା କିଏ କହିଲା ?"

ଟମ୍ କହିଲା, "ଏଇ ସିଦ୍ ଛଡ଼ା ସେପରି ଅବାନ୍ତର କଥା ଆଉ କହିବ କିଏ ?" ସେ ଖୁବ୍ ଜୋରରେ ଗୋଟାଏ ମାରିଲା ସିଦ୍‌କୁ । କହିଲା, "ଏହିପରି ମନଗଢ଼ା କଥା କହିବାକୁ ତୋତେ ଖୁବ୍ ଭଲ ଲଗେ, ନୁହେଁ ? ଯା' ଗୋଇଠା ମାରିଲା ବୋଲି ପୋଲ ମାଉସୀଙ୍କ ପାଖରେ ଗୁହାରି କରିବୁ ।"

ଯିବ୍ ତଳ ମହଲକୁ ଦୌଡ଼ ପଳାଇଲା । ପିଲା ଦୁଇଜଣ ଧୀରେ ଧୀରେ ତାକୁ ଅନୁସରଣ କଲେ ।

ଟମ୍ କହିଲା, "ହାକ୍, ଆ । ଏ ଉତ୍ସବ ଶେଷ ହେବାକୁ ବେଶୀ ସମୟ ଲାଗିବ ନାହିଁ ।"

ତଳ ମହଲରେ ବହୁତ ଲୋକଙ୍କର ଭିଡ଼ ଜମିଥାଏ । ପରସ୍ପର ମଧ୍ୟରେ କେତେ ରକମ କଥାବାର୍ତ୍ତା ଚାଲିଥାଏ । ତା'ପରେ ମି. ଜୋନ୍ସ କିଛି କହିବା ପାଇଁ ଛିଡ଼ା ହେଲେ । ତାଙ୍କୁ ଛିଡ଼ା ହେବାର ଦେଖି ଅନ୍ୟମାନେ ନୀରବ ହେଲେ । ମି. ଜୋନ୍ସ ହାକ୍ ସମ୍ବନ୍ଧରେ ସବୁକଥା କହିଲେ । ସେ କପରି ରେଡ଼୍ ଯୁ' କବଳରୁ ବିଧବା ଡୋଗଲସ୍ଙ୍କ ଜୀବନ ରକ୍ଷା କଲା ମି. ଜୋନ୍ସ ତାହା ସମସ୍ତ ଆଗରେ ବର୍ଣ୍ଣନା କଲେ । ସମସ୍ତେ ହାକ୍ ଆଡ଼କୁ ଚାହିଁ କରତାଳି ଦେଲେ । ହାକ୍‌କୁ ଭଲ ଲାଗୁ ନ ଥାଏ । ଧୀରେ ଧୀରେ ଟମ୍‌କୁ ପଚାରିଲା, "ଏଠାରୁ କେତେବେଳେ ଯିବା ?"

ମିସେସ୍ ଡୋଗଲସ୍ ହାକ୍ ପାଖକୁ ଯାଇ କହିଲେ, "ହାକ୍, ଏବେ ଜାଣିଲି ଯେ ତୋହର ଲାଗି ମୋର ଜୀବନ ରହିଛି । ଏଣିକି ତୁ ମୋତେ ଛାଡ଼ି ଆଉ କୁଆଡ଼େ ଯିବୁ ନାହିଁ । ଆଜିଠାରୁ ମୁଁ ତୋର ମା' ଆଉ ତୁ ହେଉଛୁ ମୋର ଅତି ଅଲିଅଳ ପୁଅ । ମୁଁ ତୋତେ ପାଠ ପଢ଼ାଇବି । ତା'ପରେ ତୋ'ପାଇଁ ଭଲ ଚାକିରି ଖୋଜି ଦେବି । ମୋର ଧନ ସମ୍ପଦ ବେଶୀ ନାହିଁ, ହାକ୍ । ତଥାପି ଯେତିକି ଅଛି ଆଜିଠାରୁ ସେଥିର ଅର୍ଦ୍ଧେକ ତୋର ହେଲା । ଏହାପରେ ତୋତେ ଆଉ ଦରିଦ୍ର ହିନମାନିଆ ଜୀବନଯାପନ କରିବାକୁ ପଡ଼ିବନି ।"

ପାଟିକରି ଟମ୍ କହିଲା, "ହାକ୍ ଆଉ ଆଗପରି ଗରିବ ନାହିଁ । ତା'ପାଖରେ ବର୍ତ୍ତମାନ ଅମାପ ସମ୍ପତ୍ତି । ସେ ଆଶାତୀତ ଭାବରେ

ସମ୍ପତ୍ତିଶାଳୀ !" ଆଖିତରାଟି ସମସ୍ତେ ଶୁଣିଲେ ଟମ୍ ଆଡ଼େ । ସେ ଶୁଣାଣିରେ ସତେ ଯେପରି କେତେ କୌତୂହଳ ପୂରି ରହିଥାଏ । ଟମ୍ ପୁଣି କହିଲା, "ମୋ କଥାରେ ବୋଧହୁଏ କାହାର ବିଶ୍ୱାସ ଆସୁ ନାହିଁ । ଠିକ୍ ଅଛି, ମୁଁ ବର୍ତ୍ତମାନ ଆପଣମାନଙ୍କୁ ସବୁକିଛି ଦେଖାଇ ଦେବି ।"

ଟମ୍ ସେଠାରୁ ଉଠିଗଲା ଏବଂ ଅଳ୍ପ ସମୟ ଭିତରେ ହାତରେ ଗୋଟିଏ ଓଜନିଆ ଥଳି ଧରି ପୁଣି ଭିତରକୁ ଆସିଲା । ଆଗରେ ଗୋଟିଏ ବଡ଼ ଟେବୁଲ ପଡ଼ିଥାଏ । ଥଳି ଭିତରେ ଥିବା ସବୁଯାକ ସ୍ୱର୍ଣ୍ଣମୁଦ୍ରା ତା ଉପରେ ଅଜାଡ଼ି ଦେଲା ଟମ୍ । ଦେଖିବା ଲୋକମାନେ ନିଜ ନିଜ ଆଖିକୁ ବିଶ୍ୱାସ କରିପାରିଲେ ନି । ଅନ୍ୟ ଥଳିଗୁଡ଼ିକୁ ଆଣି ଟମ୍ ସେହିପରି ସେଗୁଡ଼ିକ ଭିତରୁ ସ୍ୱର୍ଣ୍ଣମୁଦ୍ରାଯାକ ଅଜାଡ଼ି ଦେଲା ସେଇ ଟେବୁଲ ଉପରେ । କହିଲା, "ଆପଣମାନେ ଆଖି-ଆଗରେ ଯେତେ ସ୍ୱର୍ଣ୍ଣମୁଦ୍ରା ଦେଖୁଛନ୍ତି ତାହାର ଅଧେ ହାକ୍‌ର ଏବଂ ବାକି ଅଧିକ ମୋର ।"

ସମସ୍ତେ ଛୁଡ଼ା ହୋଇ ଦେଖୁଥାନ୍ତି । କାହାରମୁହଁରୁ ପଦେ-ହେଲେ କଥା ବାହାରୁ ନ ଥାଏ । କିଛି ସମୟ ପରେ ସେମାନେ ପଚାରିଲେ, "ଏତେଗୁଡ଼ିଏ ସ୍ୱର୍ଣ୍ଣମୁଦ୍ରା ତୁମେ ପାଇଲ କିପରି ?" ଟମ୍ ରେଡ଼୍ ସୁ'ର ଗୁପ୍ତଧନ କଥା ସମସ୍ତଙ୍କ ଆଗରେ ବର୍ଣ୍ଣନା କଲା । ତା' ମୁହଁର କଥା ଶୁଣି ଉପସ୍ଥିତ ଲୋକମାନେ ଏତେ ଆଶ୍ଚର୍ଯ୍ୟ ହେଲେ ଯେ ସେମାନେ ହତବାକ୍ ହେଲେ ।

# ସୁଖକର ପରିସମାପ୍ତି

ଗାଁ ଭିତରେ ରେଡ଼୍ ଯୁ'ର ଗୁପ୍ତଧନ ବିଷୟ ସାଧାରଣ ଗପ ହୋଇ ପଡ଼ିଲା । ଯେଉଁଠି ଶୁଣିବ ସେଇ କଥା । କାଳେ ଆଉ କେଉଁଠି ଗୁପ୍ତଧନ ଥାଇପାରେ ସେଇ ଆଶାରେ ଗାଁର ବହୁତ ଲୋକ ଇତସ୍ତତଃ ଖୋଳିବାରେ ଲାଗିଗଲେ । କିନ୍ତୁ ଆଉ କାହାରି ଗୁପ୍ତଧନ ଲଭିବା ସୌଭାଗ୍ୟ ଆସିଲା ନାହିଁ । ସମସ୍ତଙ୍କର ଆଶା, ଆଶାରେ ରହିଲା । ଟମ୍ ଏବଂ ହାକ୍ ଜଣେ ଜଣେ ସମ୍ପତ୍ତିଶାଳୀ ବ୍ୟକ୍ତି ହିସାବରେ ସର୍ବତ୍ର ପରିଚିତ ହେଲେ । ନିରାପତ୍ତା ଦୃଷ୍ଟିରୁ ଜଜ୍ ଥେଚର୍ ସେମାନଙ୍କର ସମ୍ପଦଯାକ ନେଇ ବ୍ୟାଙ୍କରେ ଜମା କରି ଦେଲେ । ଟମ୍ ପ୍ରତି ତାଙ୍କର ଆଦର କ୍ରମଶଃ ବଢ଼ିବାରେ ଲାଗିଲା । ସେ ଭାବିଲେ, "ପିଲା ହେଲେ କ'ଣ ହେବ, ଏଇ ଟମ୍‌ର କି ଅଦ୍ଭୁତ ସାହସ ! ଗୁମ୍ଫାର ଗୋଲକଧନ୍ଦା ଭିତରୁ ବେକିକୁ ରକ୍ଷା କଲା । ସେ ପୁଣି ରେଡ଼୍ ଯୁ'କୁ ଠାବ କରି ତାହାର ଗୁପ୍ତଧନ ହାତ କରି ପାରିଲା । ମୋର ଦୃଢ଼ ବିଶ୍ୱାସ, ସେ ଦିନେ ନା ଦିନେ ଜଣେ ବଡ଼ ସୈନିକ ହେବ । ତାକୁ ଯେକୌଣସି ପ୍ରକାର ସାହାଯ୍ୟ କରିବାରେ ମୁଁ କେବେହେଲେ କୁଣ୍ଠିତ ହେବି ନାହିଁ ।"

ଜଜ୍‌ଙ୍କର କଥା ସତ ହେଲା । ସୁଖ-ସୂର୍ଯ୍ୟର ଅରୁଣିମାରେ ଟମ୍‌ର ଜୀବନାକାଶ ଅନୁରଞ୍ଜିତ ହେଲା । କିନ୍ତୁ ହାକ୍ କ୍ରମଶଃ ଅଧିକରୁ ଅଧିକ ଅସୁଖୀ ହୋଇପଡ଼ିଲା । ନୂଆ ଜୀବନ ତାକୁ ଭଲ ଲାଗିଲା ନାହିଁ । ନିଜକଥା ଭାବି ସେ ଦୁଃଖ ଅନୁଭବ କଲା । ମିସେସ୍ ଡୋଗଲସ୍‌ଙ୍କର ଆଦର ଯତ୍ନ ତାକୁ ଅସହନୀୟ ବୋଧ ହେଲା । ତାଙ୍କ କଟକଣା ଭିତରେ ରହି ତାକୁ ସହଳ ବିଛଣାକୁ ଯିବାକୁ ପଡ଼େ । ଛୁରୀ ଏବଂ ଫର୍କ ଧରି ଖାଇବାକୁ ହୁଏ । ବହୁତ ଲୋକଙ୍କ

ସହ ମିଳାମିଶା କରିବାକୁ ପଡ଼େ । ସବୁଠାରୁ ବଡ଼ ଦୁଃଖର କଥା ଯେ ତାକୁ ସ୍କୁଲକୁ ଯିବା ପାଇଁ ହେଉଥାଏ । ତିନିସପ୍ତାହ ପରେ ସେ ଘରଛାଡ଼ି ଏପରି ଜାଗାକୁ ପଳାଇଲା ଯେଉଁଠାରେ ତାକୁ ଆବିଷ୍କାର କରିବା ସହଜ ହେବ ନାହିଁ ।

ଧମ୍ପସ୍ତେ ତାକୁ ଖୋଜିବାରେ ଲାଗିଲେ । ଶେଷରେ ଟମ୍ ତାହାର ସନ୍ଧାନ ପାଇଲା । ଗୋଟିଏ ପୁରୁଣା ଖମାର ଭିତରେ ହାକ୍ ରହୁଥାଏ । କୁଟାଗଦା ଉପରେ ଶୁଏ । ସବୁବେଳେ ଧୂଆଁ



ପିଏ । ଦେହହାତ ମଇଳା । ଦେଖିବାଲୋକ ନାକ ଟେକିବ । କିନ୍ତୁ ମନରେ ପ୍ରଚୁର ଆନନ୍ଦ । ଟମ୍ କହିଲା, "ହାକ୍, ତୋତେ ଘରକୁ ଫେରିଯିବାକୁ ପଡ଼ିବ । ଏଭଳି ଏକ କଦର୍ଯ୍ୟ ଜାଗାରେ ମୁଁ ତୋତେ ରହିବାକୁ ଦେବିନି । ତୋର ମନେରଖିବା ଉଚିତ ଯେ ତୁ ଆଉ ଗରିବ ନୁହଁ । ସୁଖକର ଜୀବନଯାପନ ପାଇଁ ତୋ ଠାରେ ଧନ-ଦୌଲତର ଅଭାବ ନାହିଁ । ତା'ଛଡ଼ା, ତୁ ଜାଣିବା ଦରକାର ଯେ ତୋ ପାଇଁ ବିଧବା ଡୋଗଲସ୍ ଅତ୍ୟନ୍ତ ଭାଙ୍ଗି ପଡ଼ିଛନ୍ତି ।"

"ମୁଁ ଆଉ ସେଠାକୁ ଫେରିଯାଇ ପାରିବିନି ଟମ୍ । ସେ ଜୀବନ ମୋତେ ଖୁବ୍ ଖରାପ ଲାଗୁଛି । ସବୁବେଳେ ସଫାସୁତୁରା ପିନ୍ଧି,

ପ୍ରତିଦିନ ଗାଧୁଅ, ଚିରୁଣୀ ଧରି ମୁଣ୍ଡ କୁଣ୍ଡାଅ । ଛି-ଛି ! ତୁ ଆଉ ଫେରିବା କଥା କହ ନାହିଁ । ସେଠାକୁ ଗଲେ ମୁଁ ଟିକେ ଧୂଆଁ ପିଇ ପାରିବିନି । ରାତିରେ ବାହାରକୁ ବୁଲିବାକୁ ଯାଇ ପାରିବିନି । କିନ୍ତୁ ସ୍କୁଲକୁ ଯିବା ପାଇଁ ବାଧ୍ୟ ହେବି ।"

"ହାକ୍, ମୁଁ ପୁଣି ଥରେ କହୁଛି, ମୋ କଥାମାନ ଫେରିଚାଲ ।"

"ତୁ ସେକଥା କହ ନାହିଁ, ଟମ୍ । ମୋତେ ସେଇ ପୁରୁଣା ଜୀବନ ଖୁବ୍ ଭଲ ଲାଗୁଛି । ନୂଆ ଜୀବନଯାପନ କରିବାକୁ ମୁଁ ଆଉ କେବେହେଲେ ସେଠାକୁ ଫେରିଯିବିନି ।"

"ହାକ୍, ସଫା ଲୁଗା ପିନ୍ଧିବା, ପ୍ରତ୍ୟହ ଗାଧୋଇବା ଏବଂ ନିୟମିତ ଭାବରେ ସ୍କୁଲ ଯିବା—ଏସବୁ ପ୍ରତ୍ୟେକ ପିଲାକୁ କରିବାକୁ ହେବ ।"

ହାକ୍ କହିଲା, "ମୁଁ କିନ୍ତୁ ଅନ୍ୟ ପିଲାମାନଙ୍କ ପରି ନୁହେଁ । ସେମାନଙ୍କର ଜୀବନଯାପନ ପ୍ରଣାଳୀ ମୋତେ ସୁହାଇବ ନାହିଁ । ଏହି ଲଟାମଛଡ଼ା ଜୀବନ ମୋତେ ଖୁବ୍ ଭଲ ଲାଗୁଛି । ଏଠାରେ ବାଧା ନାହିଁ କି ବନ୍ଧନ ନାହିଁ । ମୋତେ ଯାହା ଭଲ ଲାଗୁଛି ତାହା କରୁଛି । ସେଇ ଘରର ଆବେଷ୍ଟନୀ ଭିତରେ ମୁଁ ଚଳି ପାରିବିନି, ଟମ୍ । ସେଠାରେ ମୋର ନିଃଶ୍ୱାସ ରୁନ୍ଧ ହୋଇଯିବ ।"

"ହାକ୍, ତୋ ପାଇଁ ମୋର ଖୁବ୍ ଦୁଃଖ ହେଉଛି । ତୁ ଏକଥା ଶୁଣିଛୁ କି ନା ମୁଁ ଜାଣେନି । ଗୁମ୍ଫା ଭିତରେ ମୁଁ ଗୋଟିଏ ଦଳ ଗଠନ କରିବାକୁ ଯାଉଛି । କିଛି ଲୋକଙ୍କୁ ଆକ୍ରମଣ କରିବା ସେହି ଦଳର କାମ ହେବ । ଧନୀମାନଙ୍କଠାରୁ ସମ୍ପତ୍ତି ନେଇ ଗରିବମାନଙ୍କୁ ବିତରଣ କରିବା ସେହି ଦଳର ଲକ୍ଷ୍ୟ ରହିବ । ହାକ୍, ଏ କାମ ହେବ ଠିକ୍ ରବିନ୍‌ହୁଡ୍‌ର କାମ ପରି । ମାତ୍ର ସେ ଦଳରେ ଜଣେ-

ହେଲେ ମୂର୍ଖ, ଦୁର୍ଦ୍ଧର୍ଷ ଲୋକଙ୍କୁ ରଖାଯିବ ନାହିଁ । ସେହି ଦଳର ଲୋକମାନେ ଯେପରି କିଛି ନା କିଛି ପାଠ ଜାଣିଥିବେ, ସେମାନଙ୍କର ସ୍ୱଭାବ ଯେପରି ଖୁବ୍ ଶାନ୍ତ ସୁନ୍ଦର ହୋଇଥିବ ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେବାକୁ ପଡ଼ିବ । ଟମ୍ ସୟାର୍‌ର ଦଳକୁ ଗୋଟିଏ ଦୁଷ୍ଟ ଏବଂ ଖରାପ ଲୋକଙ୍କର ଦଳ ବୋଲି ଯେପରି କେହି ନ କହେ ତାହା ହିଁ ମୋର ଏକାନ୍ତ ଇଚ୍ଛା । ତେଣୁ ମୁଁ ଭାବୁଛି, ତୁ ସେହି ଦଳଭୁକ୍ତ ହୋଇ ପାରିବୁନି, ହାକ୍ ।”

ନିରାଶ ଆଖିରେ ହାକ୍ ଚାହିଁଲା ଟମ୍‌କୁ । ଅନୁନୟ କରି କହିଲା, “ଟମ୍, ମୋତେ ସେହି ଦଳକୁ ନେବାର ବ୍ୟବସ୍ଥା କରି ଦେ । ତୋ ଦଳରେ ସ୍ଥାନ ନ ପାଇଲେ ବଞ୍ଚି ରହିବା ମୋ ପକ୍ଷରେ କଷ୍ଟକର ହେବ ।”

“କିନ୍ତୁ ମୁଁ କ’ଣ କରିବି ହାକ୍ ? ତୋତେ ଦଳ ଭିତରକୁ ନେବାପାଇଁ ମୋର କ’ଣ ଇଚ୍ଛା ନାହିଁ ବୋଲି ଭାବୁଚୁ ? କିନ୍ତୁ ମୁଁ ନାଚାର । ତାହା କରିବାକୁ ହେଲେ ଦଳର ମତ ମାନି ତୋତେ ଘରକୁ ଫେରିଯିବାକୁ ହେବ । ଦଳର ଅନ୍ୟମାନଙ୍କ ପରି ନିୟମିତ ଭାବରେ ସ୍କୁଲ ଯିବାକୁ ପଡ଼ିବ ।”

ହାକ୍ ନୀରବ ହେଲା । ବହୁତ ସମୟ ଧରି ଚିନ୍ତା କରିବାରେ ଲାଗିଲା । ତା’ପରେ କହିଲା, “ଟମ୍ ତୋ କଥା ମାନୁଛି । ଏହାପରେ ମୁଁ ଘରକୁ ଫେରିଯିବି । ଦଳର ନିୟମମାନ ଅନ୍ୟମାନଙ୍କ ସାଙ୍ଗରେ ପ୍ରତ୍ୟହ ସ୍କୁଲକୁ ଯିବି । ଏହା କଲେ ମୋତେ ଦଳ ଭିତରକୁ ନେବୁ ବୋଲି ପ୍ରତିଜ୍ଞା କର ।”

ଟମ୍ ପ୍ରତିଜ୍ଞା କଲା ।

ହାକ୍ ପୁଣି କହିଲା, "ମୁଁ ତୋ କଥାମାନ ଚଳିବାକୁ ଚେଷ୍ଟା କରିବ । କିନ୍ତୁ ମୁଁ ସବୁବେଳେ ଘରେ ରହି ପାରିବିନି । କେତେବେଳେ କେମିତି ମୋତେ ବାହାରକୁ ଅସି ସାଙ୍ଗମେଳରେ ବୁଲିବାକୁ ପଡ଼ିବ । ତା'ହେଲେ ଧୂଆଁ ପିଇବାରେ ମୋର ଅସୁବିଧା ହେବ ନାହିଁ । ସବୁ ଠ ହେଲା । ବର୍ତ୍ତମାନ ଗୋଟିଏ କଥା ଜାଣିବାଲାଗି ମୋର ଖୁବ୍ ଇଚ୍ଛା ହେଉଛି, ଟମ୍ ।

ଦଳରେ 'ଲିଟିଲ୍‌ ଜନ୍‌ହୁଡ୍' ଭୂମିକାରେ ଅଭିନୟ କରିବ କିଏ ?